ସେଦିନ ଦଣ୍ଡେ ଘଣ୍ଟାଏ ବାହାରେ ଠିଆ ହୋଇ ଶୁଣନ୍ତି ଓ ଯେବେ ସେମାନଙ୍କର କେହି ମାନ୍ୟ ଲୋକ ଟୁଙ୍ଗୀରେ ଉପସ୍ଥିତ ନ ଥାନ୍ତି, ତେବେ ବର୍ଷୀୟସୀମାନେ ଟୁଙ୍ଗୀ ଦ୍ୱାରକୁ ଆସି ଆପଣାର ମତ ପଦେ ଅଧେ ପ୍ରକାଶ କରି ପକାନ୍ତି । ଖୁବ ଅଳ୍ପ ସମୟରେ ଗ୍ରାମର ଜଣେ ଦୁଇଜଣ ଅଳ୍ପବୟସ୍କା କନ୍ୟା ଏମାନଙ୍କ ସଙ୍ଗେ ଥାନ୍ତି । କିନ୍ତୁ ସ୍ତ୍ରୀମାନଙ୍କ ଉପସ୍ଥିତି ଅତି ଅଳ୍ପକାଳସ୍ଥାୟୀ । ଟୁଙ୍ଗୀର ଜିନିଷ ପତ୍ର ମଧ୍ୟରେ ଦୁଇ ଖଣ୍ଡ ସତ୍ରପମସିଣା, ଗୋଟିଏ ଦୀପରଖା ଓ ପ୍ରଦୀପ, ଖଣ୍ଡେ ନଡ଼ିଆ ବୃକ୍ଷ ଓ ଖଣ୍ଡେ ଜଂଗଜୀର୍ଣ୍ଣ ପଖାଉଜ । ବ୍ୟୟ ମଧ୍ୟରେ ପ୍ରତିଦିନ ଅଧ୍ୟକ୍ଷ-ଖଣ୍ଡକର ଢୋଲ ( ଏ ଶବ୍ଦଟି ଅର୍ଥ କଲେ ଢୋଲ ସ୍ଥାନରେ ଖଣି ବସାଇ ଅର୍ଥ କରିବେ ) ଓ ପଇସାକର ପାନ ଗୁଆ ଗୁଣ୍ଡି । ଗ୍ରାମର ୨।୬ ଜଣ ଯୁବକ ପାଳି କରି ଏ ବ୍ୟୟ ବହନ କରନ୍ତି ।

ସମସ୍ତେ ସବୁଦିନ ଗ୍ରାମରେ ଉପସ୍ଥିତ ନ ଥାନ୍ତି, ଗ୍ରାମରେ ଉପସ୍ଥିତ ଥାଇ ମଧ୍ୟ ଗୃହକାର୍ଯ୍ୟାନୁରୋଧରେ ସମସ୍ତ ସମୟରେ କେହି ଉପସ୍ଥିତ ହୋଇ ପାରନ୍ତି ନାହିଁ; କେହି ଟୁଙ୍ଗୀରେ ଉପସ୍ଥିତ ହେବା ପରେ ତାହାର କିଛି ବିଶେଷ ଆବଶ୍ୟକ ହେଲେ, ଅଥବା କଥୋପକଥନର ସ୍ରୋତ ତାହାର ଶ୍ରୁତିକଟୁ ହେଲେ ସେ ଟୁଙ୍ଗୀରୁ ପ୍ରସ୍ଥାନ କରନ୍ତି । ଟୁଙ୍ଗୀରେ ବ୍ୟକ୍ତିଗତ ଆକ୍ରମଣକୁ କେବେହେଁ ପ୍ରଶ୍ରୟ ଦିଆଯାଏ ନାହିଁ । ଟୁଙ୍ଗୀକୁ ଆସିବାକୁ କାହାକୁ ବାଚନିକ ବା ପାତ୍ରିକ ଆମନ୍ତ୍ରଣ କରାଯାଏ ନାହିଁ । ଅଶିକ୍ଷିତ, ସୁଶିକ୍ଷିତ, ଅର୍ଦ୍ଧଶିକ୍ଷିତ ନବ୍ୟଶିକ୍ଷିତ; ପୂର୍ବଶିକ୍ଷିତ, ଅପୂର୍ବ ଶିକ୍ଷିତ, ଧର୍ମଶିକ୍ଷିତ, ଅଧର୍ମଶିକ୍ଷିତ, ବିଧର୍ମଶିକ୍ଷିତ, ସମସ୍ତେ ଏଠାକୁ ଆସନ୍ତି; କେତେକ ବସନ୍ତି, ଶୁଣନ୍ତି, ଟିଙ୍କାନ୍ତି, ଯାନ୍ତି । ଟୁଙ୍ଗୀରେ ସମୟକ୍ରମେ ଗ୍ରାମର ପ୍ରାୟ ସମସ୍ତେ ଯୋଗ ଦେଇ ଥାନ୍ତି । ଯେଉଁମାନେ କର୍ମୋପଲକ୍ଷରେ ବିଦେଶରେ ରହନ୍ତି; ସେମାନେ ଦୁର୍ଗାପୂଜା, ବଡ଼ଦିନ, ମହରମ ଇତ୍ୟାଦି ଅବସରରେ ଗ୍ରାମକୁ ଆସନ୍ତି ଓ ଟୁଙ୍ଗୀରେ ଯୋଗ

ଦଅନ୍ତି । ରହିଯାଉଁନ ନଷ୍ଟକେନ୍ଦ୍ର ଉପଗତ ପଥିକମାନଙ୍କ କଥା-ଦୁଃଖ ଓ ପରାମର୍ଶରୁ ମଧ୍ୟ ଆମ୍ଭେମାନେ ସମସ୍ତ ସମୟରେ ବଞ୍ଚିତ ହେଉ ନାହିଁ ।

ଗ୍ରାମରେ ମୁଁ ନୂଆ । ଦିନଯାକ ଏଣେତେଣେ ବୁଲି ସନ୍ଧ୍ୟାବେଳେ ଟୁଙ୍ଗୀକୁ ଆସେଁ । ପୂର୍ବରୁ ଦେଖିଲେ ଖଣ୍ଡେ ଅଧେ ସମ୍ବାଦପତ୍ର ବା ପୁସ୍ତକ ପାଠ କରେଁ । ଏଥିରୁ ଅସି ଟୁଙ୍ଗୀର 'ଅଧିବେଶନମାନଙ୍କର ଟିପ୍ପଣୀ' ଲେଖି ରଖେଁ । ('ବସିବାଠାରୁ ଜାଣିବା ଭଲ' ଏ ପ୍ରବାଦଟି ସଙ୍ଗେ ପ୍ରବନ୍ଧମାଳାର 'ବରଂ ଉଚ୍ଛୃଙ୍ଖଳତା ଭଲ ତଥାପି ସ୍ଥିରତା ଭଲ ନୁହେଁ' ବାକ୍ୟଟି ମନାଇ ନେବେ)

ସାହିତ୍ୟଗତ ଅଶ୍ଳୀଳ ପ୍ରତି ଦୃଷ୍ଟି କଲେ ଚଳିବ ନାହିଁ । ବଡ ବଡ 'କ୍ଷୀରପିଠା'ରେ ମଣ୍ଡର ଭଅଣରୁ ସବୁବେଳେ ଖଣ୍ଡାମାଛ ମିଳେ ନାହିଁ; ତେବେ କଦାପି ଯେ ନ ମିଳିବ, ଏହା ମଧ୍ୟ କେହି କହି ପାରିବ ନାହିଁ । ସବୁ ବିଷୟରେ କପାଳ ଅନୁସାରେ ଫଳ ଫଳେ । କ୍ଷୀରପିଠା ସ୍ଥଳରେ ବିଭିନ୍ନ ରୁଚି ଓ ପ୍ରକୃତିର ଲୋକ ଉପସ୍ଥିତ ହୁଅନ୍ତି । କିଏ ଅଲଣା, କିଏ ଉଚ୍ଛୁଳୁଣିଆ, କିଏ ରାଗ, କିଏ ଖଟା, କିଏ ଥଣ୍ଡା, କିଏ ଗରମ, କିଏ ମିଠା, କିଏ ପିତା ଦ୍ରବ୍ୟର ବିଶେଷ ପ୍ରିୟ । ଗୋଟିଏ ଗୋଟିଏ ପାତ୍ରରୁ ସମସ୍ତଙ୍କ ମନ ରଖି ପରିବେଷଣ କରିବା ସହଜ ନୁହେଁ । ପରିବେଷଣର ପ୍ରଣାଳୀ ମଧ୍ୟ କେତେକ ଲୋକଙ୍କ ମନକୁ ଆସି ନ ପାରେ । ତେବେ ଏତିକି ମାତ୍ର ବୋଲିଯାଇ ପାରେ ଯେ ଆଗନ୍ତୁକ ଭୋଜନାର୍ଥୀମାନଙ୍କ ମଧ୍ୟରୁ କେହି ମୁଠାଏ ନ ପାଇ ଫେରିଯିବେ ନାହିଁ । ଖାଇବେ କି ନ ଖାଇବେ ସେ କଥା ଅଲଗା କଥା । ଅମିତଭୋଜୀ, ନିୟମିତଭୋଜୀ, ଫଳାହାରୀ ସମସ୍ତଙ୍କର ଯଥାବିହିତ ଚର୍ଚ୍ଚା କରିବାକୁ ଗୃହସ୍ୱାମୀ ପ୍ରସ୍ତୁତ ଥାନ୍ତି । ଯେଉଁମାନେ କ୍ଷୀରପିଠାକୁ ଯାଇ ବିଶେଷ ଆଦର, ଅଭ୍ୟର୍ଥନା, ଭୋଜନପଦ୍ଧତି ବା ପରିବେଷଣପଦ୍ଧତି ପ୍ରତି ଆକାଂକ୍ଷା ରଖନ୍ତି, ସେମାନଙ୍କୁ ନିବେଦନ ଯେ ସେମାନେ ଅମନ୍ତ୍ରଣ ରକ୍ଷା କରି ନ ପାରିଲେ ଗୃହସ୍ୱାମୀ ବ୍ୟଥିତ ହେବେ ନାହିଁ । ବରଞ୍ଚ ହୃଦପୃଷ୍ଠର

ଏପରି ଜ୍ୱଳନ୍ତ ପ୍ରମାଣ ମିଳିଲେ ମହାପୁରୁଷମାନଙ୍କ ଗୃହକୁ ପିଠା ସାମଗ୍ରୀ ଓ ଡାଲି ଯିବାର ଆୟୋଜନ କରାଯିବ । ଷିରପିଠା ସମୟରେ ଓ ପରେ କେତେକ ଦିନ ପର୍ଯ୍ୟନ୍ତ ସର୍ପ, ଗୃଳକ, ବାୟସ, ମକ୍ଷିକା ଓ ଶୂକରମାନଙ୍କୁ ଉତ୍ତମ ଉପାୟ ମିଳିଯିବ ।

ତେବେ ଅସ୍ମମାନଙ୍କ ଷିରପିଠା ଉନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପଡ଼ିବାରୁ ବର୍ତ୍ତମାନ ଶତାବ୍ଦୀର ସଭ୍ୟତା ଓ ବୁଦ୍ଧି ଏଥିର ପରୀକ୍ଷଣାରେ ନିୟୋଜିତ ହେବ । ପୂର୍ବରୁ ଷିରପିଠାର ସମ୍ବାଦ ଦିଆଯିବ ଓ ପରୀକ୍ଷାସ୍ୱରୂପ ଷିରପିଠାର ଗୋଟିଏ ଗୋଟିଏ ସାମଗ୍ରୀ ସ୍ୱତନ୍ତ୍ର ପାଠକପାଠିକାମାନଙ୍କଦ୍ୱାରା ପ୍ରସ୍ତୁତ ହୋଇ ଜ୍ଞାତ, କୁଟୁମ୍ବ, ବନ୍ଧୁ, ପ୍ରୀତିବନ୍ଧୁମାନଙ୍କ ନିକଟକୁ ପ୍ରେରିତ ହେବ । ପଥରେ ଯେପରି ପଚି ନଯାଏ ବା କୀଟଦଷ୍ଟ ନ ହୁଏ, ସେଥି ନିମନ୍ତେ ବୈଜ୍ଞାନିକ ସତର୍କତା ଅବଲମ୍ବିତ ହେବ । ସାମଗ୍ରୀମାନ ଆସ୍ୱାଦନ କରି ଯେବେ ସନ୍ତୁଷ୍ଟଙ୍କ ସଂଖ୍ୟା ଅସନ୍ତୁଷ୍ଟଙ୍କ ସଂଖ୍ୟା ଅପେକ୍ଷା ଅଧିକ ହୁଏ, ତେବେ ଷିରପିଠାର ଆୟୋଜନ କରାଯିବ, ନଚେତ୍ ବିଦାୟ ।



ମକଦ୍ଦମା ଓକିଲ ବାବୁଙ୍କଠାରେ ହାଜର କରନ୍ତି । ଅବଶ୍ୟ ଟଙ୍କାମୁଣ୍ଡେ ଛ ଅଣାଟି ଶେକ୍‌ଠୋକ୍ । ଏହାଛଡ଼ା ମିଠେଇଖିଆ । ଦୋଳ ଦଶହରାରେ ଚନ୍ଦ୍ରକଣା ଯୋଡ଼ା, ମିଠେଇହାଣ୍ଡିଟା ଛଡ଼ା ନାହିଁ । ଅଇନର ସମସ୍ତ ଫନ୍ଦି ଫିକରରେ କୁଶଳ, ବିଶେଷତଃ ରେଗୁ-ଲାକାରି, ଫୌଜଦାରି, କାଞ୍ଜିହାଉସ ଓ ଜଲଡୁବ କପସ୍ତୂର ଅଇନ ଏହାଙ୍କ ଜିଭ ଅଗରେ ଥୁଏ । ଶନିବାର, ରବିବାର ଓ ପର୍ବ ଛୁଟିରେ ଘରକୁ ଆସନ୍ତି । ମଫସଲରେ ବେଶ ପ୍ରତିପତ୍ତି । ନ୍ୟାପୃ ନଷାପ, କଜଅ ଛକଗର, ବଣ୍ଟିଅଗ ସବୁଠାକୁ ଅମଲିତ ହୁଅନ୍ତି । ଗ୍ରାମରେ କଣ୍ଟ୍ରା ଫଦାରଖି ମାମଲା ପଡ଼ିଲେ ମୁକ୍ତ୍ୟାର ବାବୁ ଯେବେ ଗ୍ରାମରେ ଉପସ୍ଥିତ ଅଛନ୍ତି, ଫଦାରଖି ହାକିମ ମଧ୍ୟ ତାଙ୍କ ପଦେଅଧେ ମିଠାକଥା ନ କହି ଯିବେ ନାହିଁ ? କଚେରିକୁ ଓ ସହରକୁ ନ ଗଲେ କୌଣସି ବିଷୟ ଉତ୍ତମରୂପେ ଜଣାଶୁଣା ହୁଏ ନାହିଁ ବୋଲି ଧାରଣା । ଅଭ୍ୟାସବଶତଃ ଘରର ପିଲାଙ୍କ ସଙ୍ଗେ ସୁଦ୍ଧା କଥାବାର୍ତ୍ତା କରୁ କରୁ ପଦେ ପଦେ କଚେରିଅ କଥା ମିଶି ଯାଏ ।

ମହାଜନ—ଏ ଗ୍ରାମବାସୀ ଯୁବକ, ସାହୁ ଉପାଧିଧାରୀ, ଖୁବ୍ ସଙ୍ଗତି, ଗ୍ରାମ ପ୍ରାନ୍ତରେ ଜଳଗଁ ଗୋଟିଏ ଗୋଦାମ, ଏହାଙ୍କ ପିତା ଟ ୧୦ ୯ ମୂଳ ଧନରେ ଦୋକାନଟି ଆରମ୍ଭ କରିଥିଲେ । କିନ୍ତୁ ବର୍ତ୍ତମାନ ସାହୁ ବିଶ ଖୁବ୍ ବଢ଼ିଅ, ଧାନ ଦିନେ ଗାଡ଼ି ସହରକୁ ସଓଦା ନିମନ୍ତେ ଯାଏ । ଗ୍ରାମର ଚାଉଳ, ରବି, ସୋରିଷ, ଧନିଆରେ ଏହାଙ୍କର ଏକଚେଟିଆ ଅଧିକାର । ଜିନିଷ ପାଇବା ପୂର୍ବରୁ ଟଙ୍କା ଦାଦନ ଦେଇଥାନ୍ତି, ଟଙ୍କା ମୁଣ୍ଡେ ସୁଧ ଏକ ଲାଭ । ଦଶଟି ଟଙ୍କାରେ ପଇସାଏ ମିଳିବ, ଦିନ ରାତି ଏହି ଚିନ୍ତା ।

ମନ୍ତ୍ରମ—ପାଗଳ । ଦିନ ରାତି ପାଠର ବିରାମ ନାହିଁ । ସ୍ନାନାସ୍ନାନ, ପାତ୍ରାପାତ୍ର, ସମୟାସମୟ, ବିଷୟାବିଷୟର ଜ୍ଞାନ ବିଚାର ନାହିଁ । ଯାହା ଯେତେବେଳେ ମନକୁ ଆସେ କହି ପକାଏ । କିନ୍ତୁ ଦେଖିଲେ କେତେ

ସେ ଯେଉଁ ପଦେ ପଦେ କଥା ଓ ମନ୍ତବ୍ୟ କହନ୍ତି, ତହିଁରେ ଆମ୍ଭେ-ମାନେ ଏକାଧାରରେ ଆନନ୍ଦିତ ଓ ବିସ୍ମିତ ହେଉଁ । ବାକ୍ୟାଳାପ ସମୟରେ ତାହାର ଶ୍ରେଣୀ-ସୋପାନକୁ ଅନୁସରଣ କରିବା ବିଶେଷ ଆୟାସସାଧ୍ୟ ।

ଆଜି ସନ୍ଧ୍ୟାବେଳେ ଏହି ପାଞ୍ଚଜଣ ଓ ମୁଁ ଟୁଙ୍ଗୀରେ ଉପସ୍ଥିତ ।

ପଣ୍ଡିତ ମହାଶୟ ପ୍ରସଙ୍ଗ ଆରମ୍ଭ କଲେ ।—

ଆହା! ଶରତ୍ପୂର୍ଣ୍ଣିମାର ଶୋଭା ସନ୍ଦର୍ଶନ କରି ଆମ୍ଭେ ଅକଥିତପୂର୍ବ ଆନନ୍ଦୋପଲବ୍ଧି କରୁଁ । ଏତଦୁପଲକ୍ଷେ ଆମ୍ଭେ ଗୋଟିଏ ପଦ୍ୟ ରଚନା କରିଥିଲୁଁ । ପାଠକେ ସେ ପଦ୍ୟଟି ଉଦ୍ଧାପ୍ୟାନୁମତ ହେଲେ ମୁଦ୍ରଣାର୍ଥେ ଯତ୍ନ କରିବୁଁ ।

ମୁକ୍ତ୍ୟାରେ କହିଲେ—ମୁଁ ଗୋଟା ଅମୂଲ୍ୟ ଛବି ବହିଖଣ୍ଡିଏ ଛପାଇ ଦେବି । ସହରର ବଡ଼ଲୋକମାନେ ମୋତେ ବି ଖାତିର କରନ୍ତି । ତୁମର ଏଥିରେ ଦପଇସା ରୋଜଗାର ହେବ, କିନ୍ତୁ ବହିଖଣ୍ଡିକ ଜୟରାମଲାଲ ବାବୁଙ୍କୁ ଉତ୍ସର୍ଗ କରିବ ।

ମହାଜନ କହିଲେ—ବହି ବିକ୍ରିରେ ମୂଲ ଉଠିବା କଷ୍ଟ । ଥରେ ଛାପାଖାନାରୁ ଶଏଖଣ୍ଡ 'ଶାଣ୍ଡ ବୋଦ୍ଧ ରହସ୍ୟ' କିଣି ଆଣିଥିଲି । ସେ ଟଙ୍କାରେ ଦପଇସା ସୁଦ୍ଧା ମିଳିଲା ନାହିଁ ।

ଏଣେ ପଣ୍ଡିତ ମହାଶୟ ମୁକ୍ତ୍ୟାରଙ୍କ 'ଉତ୍ସର୍ଗ' କଥା ଶୁଣି ଆଁ କରି ଚାହିଁ ରହିଲେ ଓ ଅତି କାତରଭାବରେ କହିଲେ—ଏତେ ବଡ଼ ଲୋକ ଥିଲା, ଶୁଣିଛି ଶ୍ରାଦ୍ଧ ବେଳକୁ କେହି ପଣ୍ଡିତାଶୀର୍ବାଦାର୍ଥେ ସନ୍ନି-ହେଲେ ନାହିଁ । ପରକାଳରେ କି ଦୁଃଖଭୋଗୀ ହେବ !

ମୁଁ ଈଷତ୍ ହାସ୍ୟ କରି କହିଲି—ପଣ୍ଡିତ ମହାଶୟ, ଦୁଃଖିତ ହେବାର କାରଣ ନାହିଁ । ଜୟରାମ ବାବୁ ବର୍ତ୍ତମାନ ଜୀବିତ । ପୂର୍ବେ ଯେପରି ଭୋଜ୍ୟବସ୍ତୁ କିମ୍ବା ଅର୍ଥ ଜୀବିତ କିମ୍ବା ମୃତ ବ୍ୟକ୍ତିଙ୍କ ନାମରେ ଉତ୍ସୃଷ୍ଟ ହେଉଥିଲା, ଆଜି କାଲି ପୁସ୍ତକମାନଙ୍କର ସେହିପରି ହେଲାଣି ।

ଏପରି କରିବାଦ୍ୱାରା ଦେଶର ଓ ଆପଣାର ଅନେକ ପ୍ରକାର ଲାଭ—ଯୋଗ୍ୟ ଲୋକର ପୂଜା, ନିଜର ଅର୍ଥଲାଭ; 'କୁସୁମ ପରଶେ ପଟ୍ଟ-ନସ୍ତରେ'; ଖ୍ୟାତନାମା ବ୍ୟକ୍ତିଙ୍କ ସଙ୍ଗେ ଘନିଷ୍ଠତା, ବିଶେଷତଃ ଯାହାଙ୍କ ନାମରେ ଉତ୍ସର୍ଗ ହୋଇ ଥାଏ, ଯେବେ କୌଣସି ପ୍ରକାରେ ତାଙ୍କର ଅନୁକୂଳମତପୂର୍ଣ୍ଣ ପ୍ରଶଂସାପତ୍ର ଖଣ୍ଡେ ସେ ପୁସ୍ତକରେ ଯୁକ୍ତ ହୁଏ, ତେବେ ସେ ସର୍ବୋତ୍କୃଷ୍ଟ ପୁସ୍ତକ ହେଲା ଓ ତାହା ଦେଶଯାକ ବିକ୍ରି ହୋଇ ଯାଏ ।

ମାଷ୍ଟର ମହାଶୟ କହିଲେ —Certificate (ପ୍ରଶଂସାପତ୍ର) ପାଇବା ସହଜ କଥା, regularly (ନିୟମିତରୂପେ) ଦୁଇ ଓଳି ଜଣକ ନିକଟକୁ ଯାଅ, କେତେବେଳେ ଶାଗଟାଏ, ମାଛଟାଏ, ଅଗର ଟିକିଏ, କେତେବେଳେ ବା child (ପିଲାଙ୍କୁ) ପ୍ରେମରେ କାହେଇ ପଢ଼ାଇଲେ ଅତ୍ୟନ୍ତ easy (ସହଜ) । ତେବେ ଖଣ୍ଡେ good certificate (ଉତ୍ତମ ପ୍ରଶଂସାପତ୍ର) ମିଳିଲା । ଅନେକ ସ୍ଥଳରେ certificate (ପ୍ରଶଂସାପତ୍ର) ମାନଙ୍କରେ author (ଗ୍ରନ୍ଥକର୍ତ୍ତା)ଙ୍କୁ ଅଯଥା ବାହାଦୁରି ଦିଆ ଯାଇଥାଏ । ଯେଉଁଠାରେ ଏ class (ଶ୍ରେଣୀ)ର certificate (ପ୍ରଶଂସାପତ୍ର) ଦେଖିବ, ନିଶ୍ଚୟ ଜାଣିବ ଯେ ଉମେଦ୍ୱାରଙ୍କ repeated (ପୁନର୍ଯ୍ୟାଚନ) ଜ୍ୱାଳାରୁ ରକ୍ଷା ପାଇବା ନିମନ୍ତେ ଏ plan (ଉପାୟ) କରା ଯାଇଥିଲା । Certificate (ପ୍ରଶଂସାପତ୍ର) ଦାତାଙ୍କର କିଛି ଦୋଷ ନାହିଁ । ପ୍ରକୃତ quality (ଗୁଣ) ପରୀକ୍ଷା କରି certificate (ପ୍ରଶଂସାପତ୍ର) ଦେବାକୁ ହେଲେ time (ସମୟ) ଏବଂ labour (ପରିଶ୍ରମ) ଆବଶ୍ୟକ । ଏତେ trouble (କଷ୍ଟ) କରୁଛି କିଏ ? ଟିକିଏ ଭଲ କରି ଲେଖିଦେଲେ ଖଲାସ୍ ! ଏହାଦ୍ୱାରା ମଧ୍ୟ ପରୋପକାର କରା ଯାଏ । ମୋର ନାମରୂପ flag (ଝଣ୍ଡା) ଧରି ଯେବେ ଜଣେ କିଛି earn (ଉପାର୍ଜନ) କରି ନେଲା, ତେବେ ଇହକାଳରେ ପରୋପକାର ଓ ପରକାଳରେ ସ୍ୱର୍ଗଲାଭ । ଅଳ୍ପ ଦିନ ପୂର୍ବେ ଜଣେ famous

(ପ୍ରତିଭା) ଏବଂ ଦେଶମାନ୍ୟ ଲୋକ ତାଙ୍କ ନାମରେ ଉତ୍ସର୍ଗ କରି ଖଣ୍ଡେ ବହି ଲେଖିବାକୁ ମୋତେ କହିଥିଲେ । କିନ୍ତୁ ବାପୁ ! ମୋର ସେ Power (କ୍ଷମତା) ନାହିଁ । Newspaper (ସମ୍ବାଦପତ୍ର)ରେ ପ୍ରକାଶିତ certificate (ପ୍ରଶଂସାପତ୍ର)ମାନଙ୍କ କଥା, ଭିନ୍ନ class (ଶ୍ରେଣୀ)ର—

ମୁଁ କହି ଉଠିଲି:—ମାଷ୍ଟର ମହାଶୟ ! ବନ୍ଦ କରନ୍ତୁ । Certificate (ପ୍ରଶଂସାପତ୍ର) ମାହାତ୍ମ୍ୟ ବୋଲି ଖଣ୍ଡେ ବହି ଛପାଇଲେ ଆପଣ ଦୁଇପଇସା ଅର୍ଥ କରନ୍ତେ ଓ 'ବାଟରେ ବଗିଲେ ନାଁ ପଡ଼େ', ଆପଣଙ୍କୁ ଦେଶ ବିଦେଶରେ ଅନେକ ଲୋକ ଜାଣି ଯାନ୍ତେ ।

ମହାଜନ କହିଲେ:—ପଣ୍ଡିତ ଗୀତଟି ଆରମ୍ଭ କରୁଥାନ୍ତେ, ତୁମେ ବାଜେ ଗପ ବନ୍ଦ କର, ନଇଲେ କାଲି ଅଗରେ କାହିଁକି ମୂଳା ଚେଳୋଉଛ ? ମୁଁ ଯାଉଛି ।

ମହାଜନଙ୍କୁ ଗମନୋନ୍ମୁଖ ଦେଖି ଆମ୍ଭେମାନେ ଅଗତ୍ୟା ପଣ୍ଡିତ ମହାଶୟଙ୍କୁ ଅନୁରୋଧ କଲାରୁ ସେ ପଦ୍ୟଟି ଆରମ୍ଭ କଲେ ।

ଶାରଦା ପୂର୍ଣ୍ଣିମା ।

କୌମୁଦୀ ପୂର୍ଣ୍ଣିମାରେ ଜଳଦଗଣ କଲା ନିର୍ମଳାକାଶଦେଶେ,
ପୂର୍ଣ୍ଣେନ୍ଦୁ ଖେ ବିରାଜେ ଜୀବଗଣର ମୁଦଂ ବଢ଼ାଇ ଦେଶଦେଶେ ।
ଅନୂଢ଼ା କନ୍ୟକା ଏ ନିଜ ନିଜ ଗୃହରେ ଭୋଗଚଙ୍କୁଡ଼ମାନେ,
ଯତ୍ନେ ନୈବେଦ୍ୟପୂର୍ଣ୍ଣେ କରି ଚଳ ଗଲେଣି ଚନ୍ଦ୍ରନୈବେଦ୍ୟଦାନେ ।
ଶସ୍ୟେ କେଦାର ପୂର୍ଣ୍ଣଃ, ପଥଗଣ ଶୁଖଇ ଦେଖାପଡ଼ି ପ୍ରକାଶେ,
ଅନନ୍ୟେ ଋଷିମାନେ ନିଜ ନିଜ ବଳକୁ ଗୃହେ ନାଚନ୍ତି ହର୍ଷେ ।

ମନ୍ତ୍ରଗ୍ରସ୍ତ ପାଗଳ ଏହି ସମୟରେ ଚିତ୍କାର କରି ଉଠିଲା:—
କେଶାକର୍ଷଣ ଢାକୁଢାଙ୍ଗଡ଼ାଗଡ଼ା ଗୁପୋଡ଼ ବିଡ଼ା କଉ,
ଲେଡ଼ା ନାକମୋଡ଼ା କହୁଣି କୋରଡ଼ା ପାଣ୍ଡୁଇ ଠେଙ୍ଗା ବଉ ।
ଝିଙ୍କା ବାହୁଛଟା ସମର୍ଥ ଗୋଇଠା ଚଟଙ୍କା ମୁଖୀ ଚେଙ୍ଗିବା,
ଧାକ୍କୋନ ତଉଁକାନ୍ତୁ ଗୃହକ ଉଦଃ ଭୋଟ୍ୟାଖିଚଳାମ୍ପନଃ ।

ପଣ୍ଡିତ ମହାଶୟ 'କ୍ରୋଧୋଦ୍ଗାରମୁଦ୍ଭାବୟନ୍ତଃ'; କିନ୍ତୁ ଗଣ ଧୀରେ ଅତି ବିରକ୍ତ ଓ ଗର୍ବାନ୍ୱିତ ହୋଇ କହିଲେ 'ଅରସିକେଷୁ ରସସ୍ୟ ନିବେଦନଂ ଶିରସି ମା ଲିଖ ମା ଲିଖ ମା ଲିଖ' । ଏହା କହି ତୁଙ୍ଗୀ ପରିତ୍ୟାଗ କରିବାକୁ ଉଦ୍ୟତ ହେଲେ ।

ମୁକ୍ତ୍ୟାରେ ଏଥି ମଧ୍ୟରେ ତନ୍ଦ୍ରାଭିଭୂତ ଥିଲେ । ସହସା ଏ କୋଲାହଳ ଶୁଣି ତନ୍ଦ୍ରା ତ୍ୟାଗ କରି କହିଲେ—'ପଣ୍ଡିତେ, ପିଙ୍ଗଳ ହୋଡ଼ର [illegible] ଦ୍ରଷ୍ଟା, ଅମେ ଜଣେ ସାକ୍ଷୀ, ଅମେ ବସୁ ବସୁ ଏପରି ଦଙ୍ଗା ପିଟନ୍ତି !'

ଅମ୍ଭେମାନେ ହସିଲୁ—ଅଇନ୍ କଥା ଶୁଣିଲେ ଅମ୍ଭେମାନେ ଭରୁଁ । ମୁଁ ଦେଖିଲି ଯେ 'ହଅ ଗଡ଼ୁ ଗଡ଼ୁ ମାହୁଡ଼' । ମୁକ୍ତ୍ୟାର ବାବୁଙ୍କୁ ପ୍ରକୃତ କଥା ବୁଝାଇ ଦେବାରୁ ମୁକ୍ତ୍ୟାର ଟିକିଏ ଥଣ୍ଡା ହେଲେ । ମୁଁ ପଣ୍ଡିତ ମହାଶୟଙ୍କୁ ସମ୍ବୋଧନ କରି କହିଲି:—

ଅପଣଙ୍କ ପଦ୍ୟଟି ମନ୍ଦ ହୋଇ ନାହିଁ । (ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍, ମା ବ୍ରୂୟାତ୍ ସତ୍ୟମପ୍ରିୟଂ' ବଚନତଃ ପଣ୍ଡିତ ମହାଶୟଙ୍କର ଜ୍ୱଳନୋନ୍ମୁଖ କେରୋସିନ ତୈଳର ଅବସ୍ଥା) କିନ୍ତୁ ଏପରି ଚେଷ୍ଟା କରିବାରେ ଅପଣଙ୍କ ମୂଲ୍ୟବାନ୍ ସମୟ ବ୍ୟୟ ନ କରି ଉତ୍କଳଭାଷା-ପ୍ରଚଳିତ ଛନ୍ଦମାନଙ୍କରେ ପଦ୍ୟ ରଚନା କଲେ ସମୟରେ ଜଣେ ଉତ୍କୃଷ୍ଟ କବି ହୁଅନ୍ତେ । ସଂସ୍କୃତ ଗଣରେ ଉତ୍କଳ ପଦ୍ୟ ଲେଖିବା ଅମ୍ଭମାନଙ୍କ ପକ୍ଷରେ ସହଜ ନୁହେ । ସଂସ୍କୃତରେ ସନ୍ଧି ଓ ସମାସର ସାହାଯ୍ୟରେ ପଦ୍ୟ ରଚନାର ଯେଉଁ ସୁବିଧା ଅଛି, ଉତ୍କଳଭାଷାରେ ତାହା ନ ଥିବାରୁ ଉତ୍କଳୀୟ କବିମାନେ ଦୀର୍ଘ, ହ୍ରସ୍ୱ, ଗୁରୁ, ଲଘୁ ଇତ୍ୟାଦି ବର୍ଣ୍ଣଯୋଜନ ପ୍ରଣାଳୀ ଉପରେ ଚଳାଇ ପାରି ନାହାନ୍ତି । ସଂସ୍କୃତ ପଦ୍ୟରେ କ୍ଲିଷ୍ଟତା ଦୋଷ ଦୋଷ ମଧ୍ୟରେ ଗଣ୍ୟ ନୁହେଁ; କିନ୍ତୁ ଉତ୍କଳ ପଦ୍ୟରେ ଅପ୍ରଚଳିତ କ୍ଲିଷ୍ଟତା ଦୋଷ ଉପର୍ଯ୍ୟୁପରି ଲକ୍ଷିତ ହେଲେ ପଦ୍ୟଟିକୁ ନୀରସ କରି ପକାଏ । ଅତ୍ର ମଧ୍ୟ ସଂସ୍କୃତରେ ଶବ୍ଦ-

ରୂପ ନିୟମ ଉତ୍କଳୀୟ ଶବ୍ଦରୂପ ନିୟମ ଅପେକ୍ଷା ଉତ୍କୃଷ୍ଟତର ଥିବାରୁ ପଦ୍ୟ ରଚନା ସଂସ୍କୃତ ଭାଷାରେ ସହଜତର । ସଂସ୍କୃତ ଛନ୍ଦରେ ଉତ୍କଳ ପଦ୍ୟ ରଚନା କରିବାକୁ ଗଲେ ଯତିଭଙ୍ଗ ଅବଶ୍ୟମ୍ଭାବୀ ହୋଇ ଉଠେ । କିନ୍ତୁ ଆପଣଙ୍କର ଏପରି ଚେଷ୍ଟା ପ୍ରଶଂସାଯୋଗ୍ୟ ।

ପଣ୍ଡିତ ମହାଶୟ ଟିକିଏ ସ୍ଥିର ହୋଇ କହିଲେ—'ବାତୁଳାଃ କିଂ ନ ଜଳ୍ପନ୍ତି ।' ଯେତେବେଳେ ସଂସ୍କୃତ ଆମ୍ଭମାନଙ୍କ ଭାଷାର ମାତୃଭାଷା ପରନ୍ତୁ ଦେବଭାଷା, ସେତେବେଳେ ଉତ୍କଳୀୟ ଭାଷାକୁ ଯଥାଶକ୍ତି ମାତୃଭାଷା ସଙ୍ଗେ ମିଳନ କରିବା ଅସ୍ମଦୁଦ୍ଦେଶ୍ୟ ।

ମନ୍ତ୍ରସମ ମିଠା ସ୍ୱରରେ କହିଲି—

'ହକ୍ କହେଗା, ଗୁରୁ ଚଢ଼େଗା ତ ଚଢ଼େଗା !' ଶିଙ୍ଗ ଗଣ୍ଡିରୁ ସିନା ଡାଳ ବାହାରେ, ଡାଳ କି କେବେ ଗଣ୍ଡି ହେବ ? କେଜାଣି ଅବା ଡାଳରେ କାହୁଅ ଲେସିଲେ ଗଣ୍ଡି ପରି ମୋଟ ଦିଶିବ । ଏହା ଅଣ୍ଡାଏ ବର୍ଷାରେ ସବୁ ଧୋଇ ଯିବ ।

ମୁଁ ଓ ମାଷ୍ଟର ମହାଶୟ ପାଗଳର ଲୁପ୍ତୋପମାଟିକୁ ହୃଦୟଙ୍ଗମ କରି ଆନନ୍ଦିତ ହେଲୁଁ । ମାଷ୍ଟର ମହାଶୟ ମୋତେ ଗୁପ୍ତ ଭାବରେ କହିଲେ, ସଂସ୍କୃତ poem (ପଦ୍ୟ) ଲେଖିବା ପଣ୍ଡିତଙ୍କର ଗୋଟିଏ whim (ଖିଆଲ), ବେଶି argue (ଯୁକ୍ତି) କଲେ ସେ ନାଁ ହୋଇ ଯିବେ, ଅତଏବ ଅନ୍ୟ matter (ବିଷୟ) ପକାଅ ।

କିନ୍ତୁ ପଣ୍ଡିତ ମହାଶୟ ନାଛୋଡ଼ବନ୍ଦା । ସ୍ୱରଚିତ ପଦ୍ୟଟି ଶେଷ କରିବାକୁ ଅତ୍ୟନ୍ତ ବ୍ୟାକୁଳ ହେବାର ଦେଖି ମୁଁ କହିଲି,—ପଣ୍ଡିତ ମହାଶୟ ! ଆପଣଙ୍କୁ ଗ୍ଳାନି ହେଲଣି । ଆପଣ ଆଉ କଷ୍ଟ ସ୍ୱୀକାର କରି ପଡ଼ିବେ କାହିଁକି ? ସେ ପଦ୍ୟଟି ମତେ ଦିଅନ୍ତୁ, ମୁଁ ପଢ଼ି ସାରି ମୁକ୍ତ୍ୟାର ବାବୁଙ୍କୁ ଦେଲେ ସେ ଛପାଇବାର ଉଦ୍ଯୋଗ କରିବେ ।

ମୁକ୍ତ୍ୟାର ବାବୁ ଏଥି ମଧ୍ୟରେ ପୁନର୍ବାର ତନ୍ଦ୍ରାଭିଭୂତ ଥିଲେ, କିନ୍ତୁ ନାମୋଚ୍ଚାରିତ ହେବା ମାତ୍ରେ ତନ୍ଦ୍ରା ତ୍ୟାଗ କରି କହିଲେ,

'ପଣ୍ଡିତେ, ମତେ ସେ ବହିଟି ଦିଅ, ମୁଁ ଆଉ ଥରକୁ ଛପାଇ ଆଣିବି।' ଏହା କହି ପଦ୍ୟଟି ପଣ୍ଡିତଙ୍କ ହାତରୁ ନେଲେ। ମାଷ୍ଟର ମୁକ୍ତ୍ୟାରଙ୍କୁ ପଚାରିଲେ, କାହା ନାମରେ dedicate (ଉତ୍ସର୍ଗ) ହେବ ?

ମୁକ୍ତ୍ୟାରେ— ଯାହାଙ୍କ ନାମରେ ଉତ୍ସର୍ଗ ହେବ, ତାହାଙ୍କ ନାମ କେତେ ଅଟ୍ରେ ବାଜିବ। ଯେ ବେଶି ଜରଯମନ ଦେବେ, ତାଙ୍କର ନାମରେ ହେବ। ଅମେ କଣ ଫୋକଟ୍ ଧାଡ଼ି ବାଢ଼େଇବୁ ? ଅଉ ଏ ଯେଉଁମାନେ ଗଦା ଗଦା ଟଙ୍କା ଗଣୁଛନ୍ତି, ସେମାନେ କଣ ପାଗଳ ?

ଏହା କହି ମୁକ୍ତ୍ୟାରେ ପ୍ରସ୍ଥାନ କଲେ ଓ ଅମ୍ଭେମାନେ ଟୁଙ୍ଗୀରୁ ଯିବାକୁ ବସିଅଛୁଁ ଏହି ସମୟରେ ମାଷ୍ଟର ମହାଶୟଙ୍କ ଉପରେ ଗୋଟିଏ ବିପତ୍ତି ପଡ଼ିଲା। ହଠାତ୍ ବଳଦଙ୍କ ଘଣ୍ଟି ଶୁଣିବାରୁ ଅମ୍ଭେ-ମାନେ ବାହାରକୁ ଯାଇ ଦେଖିଲୁଁ ଯେ ଜଣେ ସ୍କୁଲର ଅତିଥି ବାବୁ ସଦଳବଳ ସଯାନବାହନ ଆସି ହାଜର। ମାଷ୍ଟର ମହାଶୟଙ୍କର ସବୁ ସରସତା କେଉଁ ଆଡ଼େ ଉଭେଇ ଗଲା। 'ଇସ୍କୁଲର ବାବୁ' ବୋଲି ମାଷ୍ଟରଙ୍କ ଇଙ୍ଗିତରୁ ଜାଣିଲୁଁ। କେଉଁ ଇସ୍କୁଲର କି ବାବୁ ଠିକ୍ ଠିକ୍ କରି ପାରିଲୁଁ ନାହିଁ। ବାବୁଙ୍କ ଗାଡ଼ି ଉପର ପ୍ରାଢ଼ମେଷ ଘୁଲ ଅଭିମୁଖରେ ଛନ୍ଦମୟୀ ଟଣଟଣ ଓ କେଁ କେଁ ଶବ୍ଦ କରି ବାଜିଲା। ମାଷ୍ଟର ମହାଶୟ ଯାଇ ମହାଜନ ସାହୁଙ୍କ ହାତ ଧରିଲେ। ଦୁଇ ମାସ ତଳେ ଏ ଜଣେ ବାବୁ ମାଷ୍ଟରଙ୍କ ବସାରେ ଅତିଥି ହୋଇଥିବା ସମୟରେ ମାଷ୍ଟରେ ମହାଜନ ସାହୁଙ୍କ ଦୋକାନରୁ ହାଣ୍ଡି, କାଠ, ଚାଉଳ, ଡାଲି, ଦାନା, ଲୁଣ୍ଡା, ଘିଅ, ତେଲ, ପାନଗୁଆ, ଇତ୍ୟାଦି ଇତ୍ୟାଦି ଯାହା ଯାହା ନେଇଥିଲେ, ତାହା ଗତ ଦୁଇମାସର ହାଲରୁ ସମ୍ପୂର୍ଣ୍ଣରୂପେ ପରିଶୋଧ ହୋଇ ନାହିଁ ବୋଲି ମହାଜନ ସାହୁ ଆଜି ସଉଦା ଦେବାକୁ ନିତାନ୍ତ ଅନଟୁକ ହେଲେ। ଅମ୍ଭେମାନେ ମାଷ୍ଟରଙ୍କ ବିପଦ ବୁଝି ପାରି ସାହୁଙ୍କ ନିକଟରେ ଜାମିନ ରହିଲୁଁ। ମାଷ୍ଟର ବସାର ସଉଦାପତ୍ରର ବନ୍ଦୋବସ୍ତ କରି ଗଉଡ଼ ସାହି, ପୁଡ଼ଅ ସାହି ଓ କଣ୍ଡରା

ସାହୁ ଅଭିମୁଖରେ ଦଉଡ଼ିଲେ ଓ ପଣ୍ଡିତ ମହାଶୟଙ୍କ ଘରୁ ସ୍କୁଲକୁ ଗୋଛାଏ ଲୁଟା, ପୁଞ୍ଜାଏ ନଡ଼ିଆ, ଦୁଇପୁଞ୍ଜା ଭଣ୍ଡାରୁ ବଡ଼ି, କେରାଏ କୋଶଳା ଶାଗ ଦିବାର ବନ୍ଦୋବସ୍ତ କରି ଗଲେ । ମୁଁ ଓ ମହାଜନ ସାହୁ ନବାଗତ ଅତିଥିଙ୍କ ଗୁଣାବଳୀ ସ୍ମରଣ କରି କରି ଟୁଙ୍ଗୀରୁ ଫେରିଲୁଁ, ବସିଲୁଁ, ଆଜି ସକାଳେ ମାଷ୍ଟରେ କାହା ମୁହଁ ଚାହିଁ ଉଠିଥିଲେ ?



## ଦ୍ୱିତୀୟ ସନ୍ଧ୍ୟା ।

ପୂର୍ବବର୍ଣ୍ଣିତ ସନ୍ଧ୍ୟାଠାରୁ ଆଜପର୍ଯ୍ୟନ୍ତ ଯେତେ ବୈଠକ ହୋଇଥିଲା, ସେଥିରେ ବିଶେଷ ଉଲ୍ଲେଖଯୋଗ୍ୟ କିଛି ନ ଥିବାରୁ ତାହା ପାଠକମାନଙ୍କୁ ଜଣାଇବାର ଆବଶ୍ୟକ ବୋଧ ହେଲା ନାହିଁ ।

ଆଜି ଆମ୍ଭମାନଙ୍କର ପୂର୍ଣ୍ଣ ବୈଠକ ( Full Bench ) କହିଲେ ଅତ୍ୟୁକ୍ତି ହେବ ନାହିଁ । ବଡ଼ଦିନ ( Christmas ) ପର୍ବ ଉପଲକ୍ଷରେ କାର୍ଯ୍ୟାଳୟ ଓ ବିଦ୍ୟାଳୟମାନ ବନ୍ଦ ଥିବାରୁ ଅନେକ ପ୍ରବାସସ୍ଥ ଗ୍ରାମବାସୀ ଆଜି ଗ୍ରାମରେ ଉପସ୍ଥିତ । ଆଜି ସହରରେ ଗ୍ରାମରେ ଭେଦା ହୋଇ ବୋହୂମାନଙ୍କ ଯାତ୍ରା ହେବାର ବିଷୟ ଅଛି । ଟୁଙ୍ଗୀ ମଧ୍ୟ ଆଜି ସରଗରମ ! ୧୦।୧୫ ଜଣ ଗ୍ରାମବାସୀ ଆଜି ଟୁଙ୍ଗୀରେ ରୁଣ୍ଡ, ମୁଖ୍ୟାରେ; ମୁଁ, ସତ୍ୟବାନ୍ ପାଗଳ, ମାଷ୍ଟର ମହାଶୟ, ବନ୍ଦୋବସ୍ତ ଅଫିସର ହେଡେଳ ଅମଲା, ଅବକାରୀ ସିରସ୍ତାର ଜଣେ କରାନ ରାମ ବାବୁ (ବୟସ ୨୫।୨୬; ମାସିକ ବେତନ ଟ ୧୫ ୯; ଲମ୍ବା, ଦନ୍ତ ତେଉତନ ତରଳ ଅଛି; ସର୍ବଦା ଚଟ୍ଟିଯୋତା ବ୍ୟବହାର; ସ୍ୱାଧୀନତାର ପକ୍ଷପାତୀ; ବର୍ଷକେ ଦଶହରା ଓ ବଡ଼ଦିନ ଛୁଟିରେ ଗ୍ରାମକୁ ଆସନ୍ତି; ଗ୍ରାମର ଦୁଇ ଜଣ ଗୋଟି ଲୋକଙ୍କୁ ତାଙ୍କ ସିରସ୍ତାର ପିଅଦାଗିରି କାମରେ ରଖାଇ ଦେଇଅଛନ୍ତି; ଗ୍ରାମର ଖାସ ପଧାନଘରୁ ଉକ୍ତ ପଦ ବରଖାସ୍ ହେବାରୁ ସେ ବିଷୟ ତଳାଣ ହୋଇ ଯାଇଥିଲା, ବହୁତ ଯୋଗାଡ଼ କରି ପଧାନ ବଂଶକୁ ଖଲାସ୍ ଦେଇଦେଲେ । )

ପୁଲିସ୍ ଥାଣାର କନ୍‌ଷ୍ଟେବଲ୍ କାଶୀ ବାବୁ, ( ବୟସ ୩୫; ଦରମା ଟ ୬୯; ମଫସଲରେ ସମସ୍ତେ ଡରନ୍ତି, ସମସ୍ତେ ଜମାଦାର ବାବୁ ବୋଲି ଡାକନ୍ତି; ଅନୁସରଣୀୟ ଗ୍ରାମର ଛୋଟ ଲୋକଙ୍କୁ ଦାରୋଗାଙ୍କ ପାଖରେ ସୁପାରିସ୍ କରି ଦଫାଦାର କାମରେ ମୁକରର୍ କରାଇଦେଇଅଛନ୍ତି । ଗ୍ରାମର ଜମିଦାର ରଘୁନାଥ ଗୋସ୍ୱାମୀଙ୍କ ସଙ୍ଗେ ତକରାର ବିବାଦ; ଜମିଦାରଙ୍କୁ ଜବଦ କରିବେ ବୋଲି ନଜର ଭବିଷ୍ୟତ

ଅଞ୍ଚଳରେ ଜନାଙ୍କିକ ହେଡ଼ ପୁଲିସରେ ଭର୍ତ୍ତି ହୋଇଅଛନ୍ତି । ଥାନାର ମୁନ୍ସି ବାବୁଙ୍କର 'ଅଳିଅ ଲେଖାରେ ବାକିଆ' ସମ୍ପର୍କରେ ବନ୍ଧୁ । ପୂର୍ବେ ମୁନ୍ସି ବାବୁଙ୍କ ସଙ୍ଗେ ପରିଚୟ ନ ଥିଲା, କିନ୍ତୁ ପୁଲିସ୍ ଚାକିରିରେ ରହିବା ଦିନୁ ମୁନ୍ସିଙ୍କ ସଙ୍ଗରେ ଏହାଙ୍କର ବିଶେଷ ଭାବ । ପ୍ରାୟ ପ୍ରତିଦିନ ଏହାଙ୍କ ଘରୁ ମୁନ୍ସିଙ୍କ ଘରଟାକୁ ଶାଗଟାଏ, ମାଛଟାଏ ଯାଏ; ଦୂର ସମ୍ପର୍କରେ ବନ୍ଧୁ ଥିବାରୁ ମୁନ୍ସି ବାବୁ ଏହାଙ୍କ ଉପହାର ଫେରାଇ ପଠାନ୍ତି ନାହିଁ ଓ ହରିନାମପୁରରେ ମୁନ୍ସିଙ୍କ ଘରୁ ଏହାଙ୍କ ଘରକୁ କେଉଁ ଦିନ ଅମୃତ ଚିବାଏ, କେଉଁ ଦିନ କିଛି ମିଷ୍ଟାନ୍ନ, କେଉଁ ଦିନ କିଛି ପନିପରିବା ଆସେ । ମୁନ୍ସି ଏପରି ଧାର୍ମିକ ଓ ସତ୍ ଯେ ତାଙ୍କୁ ଅପର କେହି ପୂଜାମୂଲ୍ୟାଏ ଯାଚିଲେ ନିଅନ୍ତି ନାହିଁ; କିନ୍ତୁ ସମ୍ପର୍କ ଥିବାରୁ ନାଗା ବାବୁଙ୍କ ସବୁ ଛଡ଼ା । ଏହାଙ୍କ ଅନୁସରଣ କରି ଏ ଗ୍ରାମର ଶିବା ସେଠୀ, ଧର୍ମୁ ହୋଇ ଓ ମାଧବ ମଲିକ ଜମିଦାରଙ୍କୁ ଖାତିର କରନ୍ତି ନାହିଁ । ଗ୍ରାମର ଚୌକିଦାର ଓ ଦଫାଦାର ମଧ୍ୟ ଏହାଙ୍କୁ ବିଶେଷ ସମ୍ମାନ କରନ୍ତି । ଆମ ଗ୍ରାମର ମୁଖ୍ୟାର ବାବୁ ଏହାଙ୍କ ପରାମର୍ଶ ବିନା କୌଣସି ମକଦ୍ଦମାରେ ହାତ ଲଗାନ୍ତି ନାହିଁ । କାଶୀ ବାବୁଙ୍କୁ ଗ୍ରାମର ଜମିଦାର ପ୍ରାଣେ ଭୟ କରନ୍ତି । ଏପରି କି କାଶୀ ବାବୁଙ୍କ 'ଘରଅଡ଼େ' ଯାହା କରନ୍ତି ବା କହନ୍ତି, ସେଥିରେ ଜମିଦାରଙ୍କ ଘରର ସ୍ତ୍ରୀଲୋକମାନେ କିଛି ପାଟି ଫିଟାନ୍ତି ନାହିଁ । ଜମିଦାର କଥା ପଡ଼ିଲେ କହନ୍ତି:—ପାଣିରେ ଘର କରି କୁମ୍ଭୀର ସଙ୍ଗେ କଳି କଲେ କିପରି ଚଳିବ ? ସୁଦକ୍ଷିଣାଙ୍କ ଗର୍ଭାବସ୍ଥାରେ କବି ଯାହା ବର୍ଣ୍ଣନା କରିଅଛନ୍ତି, ସେହିପରି ଜମାଦାର ବାବୁଙ୍କର 'ସ୍ୱର୍ଗର ଗନ୍ଧ' ସୁଙ୍ଘା ଖାଇ ମନ ହେଲେ ଜମିଦାର ବାବୁ ଅଣି ଉପସ୍ଥିତ କରନ୍ତି ।)

ଏ ଗ୍ରାମର ଜମିଦାର ରଘୁନାଥ ଚୌଧୁରୀ, (ସୁଯୋଗରୁ ଜମିଦାର ବାବୁ ଅଜି ଟୁଙ୍ଗୀରେ ଉପସ୍ଥିତ । ଏହାଙ୍କର ଟୁଙ୍ଗୀକୁ ଆସିବା କ୍ୱଚିତ୍ ଘଟେ । ଏବେ ଜମିଦାରୀ କାର୍ଯ୍ୟରେ ଦିନସାରା ବ୍ୟସ୍ତ, ତା ଉପରେ

ହୋଲେ ଟୁଙ୍ଗୀକୁ ଆସି ଗ୍ରାମର ଅନ୍ୟାନ୍ୟ ଲୋକଙ୍କ ସଙ୍ଗେ ମିଶିଲେ ଆପଣାର ସମ୍ମାନ ତଳ ଯିବ ଓ ଲୋକେ ମାନିବେ ନାହିଁ ! ଜମିଦାର ବାବୁ ପ୍ରଶାଣବପ୍ରିୟ, ପରମାର୍ଥୀ ଦୀକ୍ଷାଧାରୀ; ଉଆସରେ ଅଧିକାଂଶ ସମୟ କାଟନ୍ତି । କେବଳ ମାମଲା ମକଦ୍ଦମା ପଡିଲେ ବାଧ୍ୟ ହୋଇ ସଦରକୁ ଯାନ୍ତି । ଗାଁରେ ସମସ୍ତେ କହନ୍ତି ଯେ ବାବୁ ଯୋଡ଼ୀ (jury) ରେ ବସନ୍ତି । କିନ୍ତୁ ଯୋଡ଼ୀକୁ ଯିବାର ଆମ୍ଭେମାନେ କେବେ ଦେଖି ନାହୁଁ । ଯୋଡ଼ୀର ସମନ ଆସିଲେ ବାବୁ ମଫସଲକୁ ବା ଜଗନ୍ନାଥ ଦର୍ଶନକୁ ଯାଇ ଥିବାର ଚାକରମାନେ କହି କୌଣସି ପ୍ରକାରେ ପିଅଦାକୁ ବୋଧବାଧ କରନ୍ତି ଓ ପିଅଦା ସଦର ଦରଜାରେ ସମନ ଖଣ୍ଡି ଟାଙ୍ଗି ଦେଇ ଗ୍ରାମ ଚୌକିଦାରର ଉସାଦ୍ ଓ ସନ୍ତକ ନେଇ ମନଖୁସିରେ ଅଣ୍ଟାରେ ହାତ ବୁଲେଇ ବୁଲେଇ ଚାଲିଯାଏ । ଓଡ଼ିଆ ସାହିତ୍ୟର ବିଶେଷ କିଛି ଧାର ଧାରନ୍ତି ନାହିଁ । ସିରସ୍ତାରେ ତାଳପତ୍ର ପରିବର୍ତ୍ତେ କାଗଜ ଚଳାଇବା ପ୍ରସ୍ତାବକୁ ଘୃଣାଚକ୍ଷୁରେ ଦେଖନ୍ତି । ଧାନ ମହାଜନୀ ଖୁବ୍ । ଚତୁଃପାର୍ଶ୍ୱରେ ୫ କୋଶ ମୁଲକରେ ଲୋକେ ଡରନ୍ତି । ଏବକୁ ପୁଲିସଙ୍କ ପ୍ରତାପ ହେବାରୁ ଏହାଙ୍କ ବଂଶର ଅନେକ କ୍ଷମତା ଓ ଅଧୁ ଲୁପ୍ତ ହେଲାଣି । ସଙ୍ଗରେ ୪୭ ଜଣ ମୋସାହେବ୍ ସର୍ବଦା ମଜୁଦ୍ । ଦୋଷ ମଧ୍ୟରେ ( ଅବଶ୍ୟ ଏକୋହି ଦୋଷୋଗୁଣସନ୍ନିପାତେ ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ; ତାହା ଧର୍ତ୍ତବ୍ୟ ନୁହେ ) ଦିବେଲା ଟିକିଏ ଲେଖାଏଁ ଭାଙ୍ଗ ଅଭ୍ୟାସ, ସରକାର ମାଲଗୁଜାରି ଟ ୯୦୦୯; ପ୍ରାୟ ଟ ୧୦୦୦୦ ପର୍ଯ୍ୟନ୍ତ କରଜ ହେଲାଣି, କିନ୍ତୁ ବାବୁ ଦିନେ ବର୍ତ୍ତିଲେ ସବୁ କରଜ ପରିଶୋଧ କରିଦେବେ ବୋଲି ଗର୍ବ କରନ୍ତି । ନିଜ ବ୍ୟୟରେ ଗୋଟିଏ ସଙ୍ଗୀତ ଶିକ୍ଷା ଓ ଗୁରୁ ରଖି ଅଖାଡ଼ା ଟିଏ ସ୍ଥାପନ କରିଅଛନ୍ତି । ମଫସଲରେ ବାଘ, କିନ୍ତୁ କଚେରିର ନାମ ଶୁଣିଲେ ଉଆସରେ ପଶନ୍ତି । ହାକିମ ହୁକୁମାଙ୍କ ପାଖରେ କାର୍ଯ୍ୟ ପଡିଲେ କ୍ଷମତାପ୍ରାପ୍ତ କାରପର୍ଦ୍ଦାଜମାନଙ୍କଦ୍ୱାରା କାର୍ଯ୍ୟ ଚଳାଇଥାନ୍ତି । ମୋସାହେବ୍ମାନେ

କହନ୍ତି 'ଯେଉଁ କାମ ଈଶ୍ୱରଙ୍କଦ୍ୱାରା ହେବ, ସେଥି ପାଇଁ ଖ୍ରୀଷ୍ଟ ଆମଙ୍କୁ କାହିଁ ବାଧା ଲାଗିବ ?' କିନ୍ତୁ କେତେକ ଦୁଷ୍ଟଲୋକ କହନ୍ତି ଯେ ବାବୁ ଥରେ ଦୁଇ ଥର ଅନୁଭବଦ୍ୱାରା ଶିକ୍ଷା ପାଇଥନ୍ତି ଯେ ବାବୁଙ୍କ ଭଲ ଲୋକ ଡାକ୍ତରଙ୍କୁ ଓ ଦାଇମଣ୍ଡିଙ୍କୁମାନଙ୍କ ପାଖକୁ ଯିବାଟା କେତୋନ୍ତି କରାଯାନ୍ତି ବୁଝେ । ଇଂରାଜୀରେ ଆପଣା ନାମଟା ଦସ୍ତଖତ କରି ଶିଖିବେ ବୋଲି ବାବୁ ଖୁବ୍ ଯତ୍ନ କରିଥିଲେ, ଏମନ୍ତ କି ଟଙ୍କାଏ ବାଦ୍ ଖୋରାକ ପୋଷାକରେ ଜଣେ ମାଷ୍ଟର ଇଂରାଜୀ ଦସ୍ତଖତ ଶିଖାଇବାକୁ ୬ ମାସ ରଖିଥିଲେ ଓ ରାତ୍ରିଭାଗ ଟାଣିବା ହିସାବ ମନେ ରଖି ବାବୁ ଦସ୍ତଖତଟା ଶିଖି ଯାଇଥିଲେ, କିନ୍ତୁ ମାଷ୍ଟରଙ୍କ ପେନ୍‌ସନ ଛାଡ଼ି ହେବା ସଙ୍ଗେ ସଙ୍ଗେ 'ଯତ୍ପଠିତଂ ତଦ୍ଗୁରବେ ନିବେଦିତଂ' । ହେଲେ କଣ ହେବ ଦସ୍ତଖତର ପ୍ରଥମ ଅକ୍ଷରଟା ଗାର ଅଦ୍ୟାବେ ବାବୁଙ୍କର ମନେ ଅଛି । ମୋସାହେବମାନେ କହନ୍ତି 'ଆମ୍ଭ ଅଂରେଜୀ ନ ପଢ଼ି ଏତେ ଚଞ୍ଚଳ ଦସ୍ତଖତ ଶିଖି ଗଲେ, ଯେବେ କିଛି ଅଂରେଜୀ ପଢ଼ି-ଥାନ୍ତେ, ତେବେ ଆଜ ଆମ୍ଭ ଜଜ କଲେକ୍ଟର ହୋଇ ବସିଥାନ୍ତେ ।')

* *

ଏଛଡ଼ା ଆଜି ଟୁଙ୍ଗୀରେ ଅନେକ ଦେଣାହାଣୀ । ଜମିଦାରଙ୍କ ଘରୁ ମହମବତୀଦିଆ ଲଣ୍ଠନ ଖଣ୍ଡିଏ ଆଜି ଟୁଙ୍ଗୀକୁ ଆଲୋକିତ କରିଅଛି । ଏହାପରି ବିଶେଷ କାର୍ଯ୍ୟୋପଲକ୍ଷରେ ଲଣ୍ଠନ ଖଣ୍ଡିକ ବ୍ୟବହୃତ ହୁଏ । ନଇଲେ ଅନ୍ୟ ସମୟରେ କଣା ଗୁଡ଼ିଆ ହୋଇ ଜମିଦାରଙ୍କ ପଣ୍ଡୁଆ ଘରେ ଟଙ୍ଗା ହୋଇଥାଏ ।

ଆଜି ଚାଶୀ ବାବୁ ସଭାର ନେତା, କହିଲେ:—'ଚୌଧୁରୀ ! ଆଜି ସନ୍ଧରେ ଗାଁ ମୁଣ୍ଡ ବରଗଛ ମୂଳେ ନାଚ ହେବ, ତୁମ୍ଭଙ୍କୁ ପଇସା ପଡ଼ିବ ନାହିଁ, ନାଚ ଦେଖିବାକୁ ଆଜି ତୁମ୍ଭଙ୍କୁ ଆମ୍ଭେ ଆମନ୍ତ୍ରଣ କଲୁଁ ।' ଚୌଧୁରୀ ବଡ଼ ଚାଲାକ୍ ଲୋକ, କହିଲେ:—'ଆଜ୍ଞା, ସେ ନାଚବାଲା ଆମଠାରୁ ବଧାଇ ପାଇବେ । ଆମେ ଥାଉଁ ଥାଉଁ ଆପଣ ପଇସା

ଖର୍ଚ୍ଚ କରି ନାଚ ଦେଖିବେ ? ଆପଣ ବସିଥିଲେ ଆମର କେତେ ପଇସା—

କାଶୀ ବାବୁ 'ନା ନା' କହି ଆପଣାର ଅତ୍ୟନ୍ତ ସମ୍ମତି ଜଣାଇଲେ ।

ମୋର ପୂର୍ବବାରସ୍ଥ ଲୋକଙ୍କ ଛଡ଼ା ଗ୍ରାମର ଅନ୍ୟ ସମସ୍ତେ ମୋର ସ୍ୱଭାବସୁଲଭ ଚପଳତା କ୍ଷମା କରିଥାନ୍ତି । ମୁଁ ଜମାଦାର ବାବୁଙ୍କୁ କହିଲି:—

ଜମାଦାର ବାବୁ ! ଦଳକୁ ଦଳ ଦେଖନ୍ତୁ ଉନ୍ନତ ଆପଣମାନଙ୍କ ହାତରେ, 'ବୋନାପାର୍ଟ'ଙ୍କୁ ଆପଣଙ୍କର ପ୍ରଶ୍ରୟ ଦେବାଟା ଭଲ ହେଉ ନାହିଁ । ଆପଣମାନେ କ୍ଷମତାପନ୍ନ, ଆପଣମାନଙ୍କ ସଙ୍ଗତରେ ଯାହା ହୋଇପାରେ, ଆମ୍ଭମାନଙ୍କ ପରି ନଗଣ୍ୟମାନଙ୍କ ସହସ୍ର ଚେଷ୍ଟାରେ ତାହା ସମ୍ଭବ ନୁହେଁ । ଗ୍ରାମରେ ନାଟକ ଅଭିନୟଦଳ ସୃଷ୍ଟି କରନ୍ତୁ ।

ଜମିଦାର ମୋ କଥାରେ ବିରକ୍ତ ହୋଇ ଜମାଦାରଙ୍କ ଅଜ୍ଞାତରେ ମୋ ଆଡ଼କୁ ଭ୍ରୂକ୍ଷେପ କଲେ (ବୋଧହୁଏ ବନ୍ଦ ହେଲେ ଯେ ଏ ନାଚ ଖର୍ଚ୍ଚ ବାଦ୍ ତାଙ୍କୁ ଆଉ କେତେ ଚାନ୍ଦାଟାରେ ପଡ଼ିବାକୁ ହେବ) ଓ ଜମାଦାର ବାବୁ ଈଷତ୍ ହାସ୍ୟ କରି କହିଲେ—

'ଘୁଅଙ୍ଗ ନ ହେଲେ ଓ ପାଠି ନ ହେଲେ ଯାତ୍ରା "ଜମେ ନାହିଁ । ଦେଖଣାହାରୀ କମି ଯାନ୍ତି, ଦେଖଣାହାରୀ ନ ଥିଲେ କ ଯାତ୍ରା ଶୋଭା ପାଏ ? ଯେତିକି ବେଶି ହସିବ କୁଦିବ, ଯେତିକି ବେଶି ହସ କଥା ଓ 'ଭଣ୍ଡମଣ୍ଡ' ପଢ଼ିବ, ସେତିକି ବେଶି ଲୋକ ଜମିବେ ।'

('Fit audience though few' ବିଖ୍ୟାତ କବିଙ୍କ ପଦଟି ମୋ ମନେ ପଡ଼ିଲା) ମୁଁ କହିଲି:—ଜମାଦାର ବାବୁ ! ମାର୍ଜିତ ରୁଚିର ୨।୪ ଜଣଙ୍କ ପ୍ରଶଂସା ଅପେକ୍ଷା ଜଘନ୍ୟରୁଚିର ପାଞ୍ଚଶ ଲୋକଙ୍କ 'ବାହାବା' କୌଣସି ଗୁଣରେ ଉତ୍କୃଷ୍ଟ ନୁହେଁ । ତ୍ରୁଭାଏ ବିକଟ ଚିତ୍ର ଲୋକଙ୍କ ଆଗରେ ଦେଖାଇବା ଶିକ୍ଷିତ ଲୋକର ଉଚିତ ନୁହେଁ । ଆମ୍ଭମାନଙ୍କ ଯାତ୍ରାରେ ବାପ ପୁଅ, ଭାଇ ଭାଇ, ଭାଇ ଭଉଣୀ, ସମସ୍ତେ ଏକତ୍ର

ଯାତ୍ରା ଦେଖନ୍ତୁ । ଏମାନଙ୍କ ସମସ୍ତରେ ଅଭିନୟ ଚିହ୍ନ ଓ କଥୋପକଥନ ଅତି ଅଡୁଆ ବୋଧହୁଏ । ଯାତ୍ରାରେ ଯାହା କହିବ କି କରିବ, ତାହା ସ୍ୱଭାବସଙ୍ଗତ ଓ ପ୍ରକୃତ ଘଟଣାମାନଙ୍କର ଅବିକଳ ଅନୁରୂପ ହେବା ଆବଶ୍ୟକ; ମନେ କରନ୍ତୁ, ସାଧାରଣ ବ୍ୟବହାରରେ ଯେତେବେଳେ ଜଣକୁ ଡାକନ୍ତି, ସେ ଆସି ପହଞ୍ଚେ । କିନ୍ତୁ ଯାତ୍ରାରେ ମଦନାମାକୁ ଡାକିବା ମାତ୍ରକେ ମଦନାମା ବଦର୍ଯ୍ୟ ବେଶରେ 'ମଦନାମା, ମଦନାମା କିଏ ଡାକୁଛି; ମଦନାଲାଗି ମୋ ହୃଦ ଝୁରି ପଡ଼ୁଛି' ବୋଲି ନାଚି ନାଚି ଆସି ଯାତ୍ରାସ୍ଥଳରେ ପହଞ୍ଚେ । ଏ କଣ ସ୍ୱାଭାବିକ ଘଟଣାର ଅନୁକରଣ ହେଲା ? ମଦନାମାର ମୁଖ ଚିତ୍ରିତ ଓ ମଣିବା ଉପରେ ପଡ଼ୁଛି; ଏପରି ସ୍ଥଳରେ ତାକୁ ଦେଖିଲେ ମନରେ ଘୃଣାର ଉଦୟ ହୁଏନା; କିନ୍ତୁ ମଦନାମାର ବେଶ, ନାଚ ଓ କଥାବାର୍ତ୍ତାର ଭଙ୍ଗୀରୁ କେତେ ଠୋଠୋ ନ ହସି ରହିପାରନ୍ତି ନାହିଁ ! ପୁଣି ପୂର୍ବରୁ ପ୍ରସଙ୍ଗକ୍ରମେ ଯାହାର ଆସିବା ଜଣା ନ ଥାଏ, କିମ୍ବା ଅନାହୂତ ହୋଇ ଉପସ୍ଥିତ ହେଲେ, ଯାତ୍ରାରେ ହେଉ ବା ସଂସାରରେ ହେଉ, ଆତ୍ମପରିଚୟ ଅବଶ୍ୟକ ହୁଏ । କିନ୍ତୁ ଯାହାକୁ ଡାକନ୍ତି ବା ଯାହାର ଆସିବା ପୂର୍ବରୁ ଜଣା ଥାଏ, ସେ ଆସି 'ମୁଁ ଅମୁକ ଆସିଲି, ମୁଁ ଅମୁକ ଆସିଲି,' ଏପରି ଚିତ୍କାର କରିବା ଅସ୍ୱାଭାବିକ ଓ ହାସ୍ୟାସ୍ପଦ ! ଭାରତଲୀଳା ପ୍ରସଙ୍ଗରେ ଦ୍ୱାରୀ ପ୍ରସଙ୍ଗ ନିତାନ୍ତ ଅସ୍ୱାଭାବିକ; ସଂସାରରେ ଦ୍ୱାରୀ ରାଜାଙ୍କ ଆଗରେ କର ଯୋଡ଼ି ଥରହର ହୋଇ ଆଜ୍ଞା ଶୁଣିବା ନିମନ୍ତେ କର୍ଣ୍ଣ ଡେରି ରହିଥାଏ, କିନ୍ତୁ ଯାତ୍ରାରେ ଦେଖ, ଦ୍ୱାରୀ ଓ ରାଜାଙ୍କ ମଧ୍ୟରେ କଥାବାର୍ତ୍ତା ଓ ବ୍ୟବହାର ନିତାନ୍ତ ଅଶ୍ଳୀଳ ଓ ଅରୁଚିକର । ଦ୍ୱାରୀର ରାଣୀଙ୍କ ପ୍ରତି ସମ୍ବୋଧନ ଓ ଅଙ୍ଗଭଙ୍ଗୀ କି ବିକଟ ଓ ପ୍ରକୃତ ଜୀବନରେ ସ୍ୱପ୍ନରେ ସୁଦ୍ଧା ଘଟେ କି ନାହିଁ ସନ୍ଦେହ ! ଆମ୍ଭମାନଙ୍କ ଦେଶର ଯାତ୍ରାରେ ଅନେକ ପ୍ରସଙ୍ଗରେ ଅଶ୍ଳୀଳତା ଖୋଲା କଳାଟରେ ବିରାଜିତ । ଏହା ଛଡ଼ା ଏ ସ୍ଥାନରେ ସ୍ୱନାମଖ୍ୟାତ

'କବି'ମାନଙ୍କ ରଚନାଗୁଡ଼ିକ ଅଦ୍ଭୁତ ଆଶ୍ଚର୍ଯ୍ୟଜନକ—ହିନ୍ଦି, ବଙ୍ଗଳା ଓ ଓଡ଼ିଆ ଭାଷା ଓ ବ୍ୟାକରଣର ଏକ ଅଦ୍ଭୁତ ସମ୍ମିଶ୍ରଣ ! ଏମାନଙ୍କ ରଚନା ଭାଷାର ଝୋଟୁଆ ବୋଲି କହିଲେ ଚଳିବ ! ମଫସଲର ଅଭିଧାନରେ 'କବି'ର ଅର୍ଥ ଯାତ୍ରାର କବି,—ଅର୍ଥାତ୍ ହିନ୍ଦୁସ୍ଥା କବି (ଢୋକ ?)ର ଅର୍ଥ—ଯାହାର ସମ୍ମିଶ୍ରଣ ଉତ୍ତର ଲୋକଙ୍କୁ ସୁସ୍ୱାଦୁ ଲାଗେ । ଥିଏଟର ଆରମ୍ଭ କଲେ ଅନେକ ଦୋଷ ମାର୍ଜିତ ହୁଅନ୍ତା । ଶିକ୍ଷିତ ଲୋକଙ୍କ ରଚିତ ନାଟକରେ ଅଶିକ୍ଷିତ 'କବି'ଙ୍କ ରଚିତ ସୁଆଙ୍ଗ ଅପେକ୍ଷା ଅବଶ୍ୟ ଅଳ୍ପ ଦୋଷ ଦେଖାଯିବ ।

ଥିଏଟର ନାମ ଶୁଣି ଜମାଦାର ବାବୁ କହିଲେ, ଥିଏଟର ହେଲେ 'ବାଈନାଚ' ହେବ, ବେଶ୍ କଥା । ଏଠାକୁ ବେଶ୍ୟା ଆଣିଲେ ଯିଆଦା ଖରଚ ପଡ଼ିବ । ଅଚ୍ଛା, ସେ କଥା ଆମେ ବନ୍ଦବସ୍ତ କରିଦବା । ଏପର—

ରାମ ବାବୁ କହି ଉଠିଲେ—'ଏପର' ଆଉ କଣ ? ଏଠାରେ ଥିଏଟର ହେଲେ ଅବଶ୍ୟ ଉତ୍କଳର ବହୁ ପଇସା ବଢ଼ନ୍ତା; ଭଦ୍ର-ମାନେ ବି ଉପବାସରେ ଫେର ଯାନ୍ତେ ନାହିଁ । ବାଈ ନ ଆଣି ଘରସ୍ତ୍ରୀ-ମାନଙ୍କୁ ଶିଖାଇଲେ ସେମାନେ ବେଶ୍ ନାଚନ୍ତେ ।

ମନ୍ତ୍ରିରାମ କହିଲେ—ବାଈଙ୍କ ଭଳି ଘରର ମାଇପଙ୍କୁ ଏତେ ଢଙ୍ଗ କାହୁଁ ଆସିବ ? ଘର ମାଇପଙ୍କ ନାଚ ଦେଖିଲା ବେଳେ କାହାରିକି ମଣିଷ ମୂର୍ତ୍ତି ବଦଳ କରି କାଠ ପିତୁଳାଟି ପରି ବସି ନାଟ ଦେଖୁଥିବ ? ବାଈମାନେ ନ ଥିଲେ ଘର ମାଇପେ କି ସହଜରେ ଠିକଣା ପଡ଼ୁଥାନ୍ତେ ?

ମୁନ୍ସିଆର ବାବୁ—ସହରରେ କେତେ ଥେଟର ହେଲାଣି, ଢଲୁ ଅଙ୍କଟେକ୍ ଗୋଟିଏ ବି ନାହିଁ । ଆମ ବାବୁ (ସହରର ଉକୀଲ) ଙ୍କ ସଙ୍ଗେ ଖାନା ଦର୍ଶନରେ ଆମେ ଥେଟର ଦେଖିବାକୁ ଯାଇଥିଲୁଁ । ସେଥିରେ କିଛି ମଜା ପାଇଲୁଁ ନାହିଁ । ଥେଟର କଥାବାର୍ତ୍ତା ଶୁଣି ଆମକୁ ନିଦ ମାଡ଼ିଲା ।

ସଂସ୍କୃତ ସାହିତ୍ୟ—ଓଡ଼ିଶାର ଏବେ Theatre (ଥିଏଟର) ମଧ୍ୟରେ କୋଠପଦା ମଦନ୍ତ ପୂର୍ଣ୍ଣ ଗୋସାଇଁଙ୍କ Theatre (ଥିଏଟର) ଅଦ୍ୟାଏ ଅଛି, ଈଶ୍ୱର ଏ Theatre (ଥିଏଟର)କୁ long live (ଦୀର୍ଘଜୀବୀ) କରନ୍ତୁ । ସେଥିରେ ସ୍ତ୍ରୀମାନଙ୍କ part (ଅଂଶ) ନାଟୁଆ ପିଲାଙ୍କଦ୍ୱାରା ହେଲେ । Dancing boys (ନାଚପିଲାମାନେ) ଥିଏଟର ସମୟରେ ଥିଏଟରରେ, ଅନ୍ୟ time (ସମୟ)ରେ ସଙ୍ଗୀତ ଆଖଡ଼ାରେ ଥାନ୍ତି—ତା ଛଡ଼ା ଏ country (ଦେଶ) ଓ ଭାଷାର ଉନ୍ନତ କାମରେ ମହନ୍ତ ମହାରାଜ ଥିଏଟରରେ ଓ guest (ଅତିଥି) ମାନଙ୍କ ଖର୍ଚ୍ଚରେ ବହୁତ spend (ବ୍ୟୟ) କରନ୍ତି । ଅଧିକ ପରିମାଣରେ ଦୁଧ ଦହି, sweet meat (ମିଷ୍ଟାନ୍ନ) ଲୁଚି ଇତ୍ୟାଦି ଖର୍ଚ୍ଚ ହୁଏ । କେତେଦିନ ଥିଏଟର ସମୟରେ ମଠଟି ଅବାରିତଦ୍ୱାର ହୁଏ ।

ମତ୍ରାମ ପାଗଳ ଏହି ସମୟରେ ପାଟି କରି ଉଠିଲା—ଅହା ! ଆଜି କେଉଁ ଦହି ମିଳନ୍ତା ! ଦହି ଖୋଇ ଯାହା ଦେଖିଲେ ଆମବର ଯାନି ଯୋଗଣୀ ବା ଧଣ୍ଡୁଣୀ ମାତ୍ରେ ନାହିଁ । ଏକ ଯାଗାରେ ବସି ଯାହା ଦେଖିବାକୁ ଯୁମ ହୁଏ ।

ମୁଁ କହିଲି, ମଫସଲରେ ଥିଏଟର ଆରମ୍ଭ କରି ଜନସାଧାରଣଙ୍କର ଥିଏଟର ପ୍ରତି ପ୍ରବୃତ୍ତି ଜନ୍ମାଇବା ସାମାନ୍ୟ ସୁଖର ବିଷୟ ନୁହେଁ । ଜମିଦାର ବାବୁ ! ଆପଣ ଯାହା ଭୟ କରୁଅଛନ୍ତି, ବାସ୍ତବରେ ତାହା ନୁହେଁ । ବେଶ୍ୟାନାଚ ଓ ମଦ୍ୟପାନ ଥିଏଟରର ଅଙ୍ଗବିଶେଷ ନୁହେଁ । ବାଳକମାନଙ୍କଦ୍ୱାରା ଥିଏଟରରେ ସ୍ତ୍ରୀମାନଙ୍କ ଅଂଶ ଉତ୍ତମରୂପେ ଗୃହୀତ ହୋଇପାରେ । ଇଂଲଣ୍ଡରେ ପୂର୍ବେ ବାଳକମାନଙ୍କଦ୍ୱାରା ସ୍ତ୍ରୀମାନଙ୍କ ଅଂଶ ଗ୍ରହଣ ଥିଲା, ଏବେ କୁଳକନ୍ୟା ବା ଯୁବତୀମାନେ ଥିଏଟରରେ ଯୋଗ ଦିଅନ୍ତି । ଏ ଦେଶରେ ତାହା ହେବାକୁ ଅନେକ ଦିନ ଅଛି । ତାହା ନ ହେବା ପର୍ଯ୍ୟନ୍ତ ଅନ୍ତତଃ ବାଳକମାନଙ୍କଦ୍ୱାରା

କାର୍ଯ୍ୟ ଚଳବ । ତେବେ ବାଳକମାନଙ୍କୁ ଅଙ୍ଗଭଙ୍ଗୀ, ସ୍ୱର ଇତ୍ୟାଦି ବିଷୟରେ ଶିକ୍ଷା ଦେବା ନିମନ୍ତେ ଉପଯୁକ୍ତ ଶିକ୍ଷୟିତ୍ରୀ ଆବଶ୍ୟକ ।

ଜମାଦାର ବାବୁ କହିଲେ—ଅରେ ସେ କଥା କଣ କହୁଚ, ଅଳ୍ପ ହାଲ ଓସ୍ତାଦଅଣି ମିଳିବା କାଠିକର ପାଠ । ଯେବେ ଗୋଟିଏ ମିଳବ, ତେବେ ନାଚବାକୁ କି ଅଁ ପାଖୋଷ୍ଟି ନ ମିଳବେ ? ଯେଉଁମାନେ ବହି ତିଆର କରୁଛନ୍ତି, ସେମାନେ ଯେତେବେଳେ ସ୍ତ୍ରୀମାନଙ୍କ ପରାମର୍ଶ ନ ନେଇ ଅପଣା ମନରୁ ସ୍ତ୍ରୀମାନଙ୍କ ମନର ଭାବ କାଢ଼ି ଲେଖି ପକାଉଛନ୍ତି, ଆମ୍ଭେମାନେ ସ୍ତ୍ରୀଙ୍କି ନ ନେଇ ପିଲାଙ୍କୁ କି ତାଲିମ୍ କରି ପାରିବା ନାହିଁ? ଅଚ୍ଛା, ସେ କାମ ଅମଚକ୍ ।

ମୁଁ କହିଲି—ଅପଣ ଯାହା କହିଲେ ତାହା ପ୍ରକୃତ । କିନ୍ତୁ ଅଙ୍ଗ-ଭଙ୍ଗୀ ଓ ସ୍ୱର ମାନ ଶିଖାଇବା ଅପଣ ଯେତେ ସହଜ ବୋଧ କରୁ-ଅଛନ୍ତି, ପ୍ରକୃତରେ ତାହା ନୁହେ । ଯାହାହେଉ ଆପଣମାନେ ଥିଏଟର ପ୍ରତି ଚେଷ୍ଟା କରନ୍ତୁ । ନାନାସ୍ଥାନ ବୁଲି ଦେଖାଇବା ଯେ ଉଡ଼ିଆ ଭାଷା ଶୁଖିଲା ଭାଷା ନୁହେ । 'ହାତ ଅଲସେ ନଣ୍ଟ ବର୍ଦ୍ଧା' ବୋଲି ଆଜି ଉଡ଼ିଆ ଭାଷାପ୍ରତି ଲୋକଙ୍କର ଆସ୍ଥା ନାହିଁ । ଅନ୍ତତଃ ଏହା ବଙ୍ଗଭାଷାର ସମକକ୍ଷ ହେବାର ଯୋଗ୍ୟ । ପହିଲେ ରଙ୍ଗମଞ୍ଚ, ଚିତ୍ରିତ ପରଦା ଓ ବେଶ ପରିଚ୍ଛଦ ଇତ୍ୟାଦିରେ କେତେକ ବ୍ୟୟ କରିବାକୁ ହେବ, କିନ୍ତୁ ସମ୍ପୂର୍ଣ୍ଣ ଶିକ୍ଷା କରି ଥରେ ସହରକୁ ଗଲେ ଲାଭ ହେବ, କିଛାନ୍ତ ପକ୍ଷରେ ଖର୍ଚ୍ଚଟା ଉଠିଯିବ ।

ମହାଜନ କହିଲେ ( ଅତି ବ୍ୟଗ୍ର ଭାବରେ ଓ ଜମାଦାରଙ୍କୁ ନ ଶୁଣାଇଲା ପରି ହୋଇ)—ଯେବେ ଲାଭ ହବ ବୋଲି ସମସ୍ତେ କହୁଛ, ତେବେ ଏ କାମଟି ଅରମ୍ଭ କର, ମୁଁ ଅଗାଉଁ ଟଙ୍କା ଦେବି; ତୁମର ଲାଭ ହେଲେ ମତେ ମାସକେ ଟଙ୍କା ମୁଣ୍ଡେ ଦୋ ପଇସା ସୁଧ ଦବ, ଲାଭଟଙ୍କ ତୁମେ ନବ ।

ଜମାଦାର—ଚୌଧୁରୀଙ୍କ ଉକ୍ତ ବଡ଼ଲୋକ ଥାଉଁ ଥାଉଁ ଟଙ୍କା

ମହାଜନଘରୁ କାହିଁକି ଆଣିବ ? ଚୌଧୁରୀ ଏ କାମ ଚଳାଇ ଦେଉ-ଥିବେ, ଟଙ୍କା ମିଳିଲେ ନେବେ ।

ଜମିଦାର ବାବୁ ଏକଥା ଶୁଣି ପ୍ରଥମେ ତାଙ୍କର ବାକ୍‌ରୋଧ ହୋଇ-ଗଲା । ଏକେତ ଟ ୧୦୦୦୦୯ କରଜ । ସହରର ମହାଜନ କେହି ପାଖରେ ପୂରାଇ ଦେଉ ନାହାନ୍ତି । ଏଥିକି କେଉଁ ଢଙ୍ଗର ? ପଛକୁ ଏହି ଗ୍ରାମର ମହାଜନ ସାହୁଙ୍କଠାରୁ ଟଙ୍କା କରଜ ନେବାର ସ୍ଥିର ହେଲା । କିନ୍ତୁ ମହାଜନ ସାହୁ ନିୟମ କରିଛନ୍ତି ଯେ ବିନା ବନ୍ଧକରେ ସେ କାହାକୁ ପଇସାଟିଏ କରଜ ଦେବ ନାହିଁ । ମହାଜନଙ୍କର ନିକଟ ଖୁବ୍ ଅଲାପୀ ଲୋକ ଅପି ବିନା ବନ୍ଧକରେ ଟଙ୍କା କରଜ ମାଗିଲେ ମହାଜନ କହେ 'ଆହା ! ମୋର ତୁମକୁ ଟଙ୍କା ଦେବାର ଖୁବ ଇଚ୍ଛା ଥିଲା । ଦ ଦେନ ଯାଗାରେ ଟଙ୍କା ବୁଡ଼ି ଯିବାରୁ ମୁଁ ନିର୍ମାଲ୍ୟ ଛୋଇଥିଲି ଛୁଇଁ ଚୋଟା ଏ ନିୟମ କରି ପକାଇଛି ବିନା ବନ୍ଧକରେ ଗୁରୁଗୋସେଇଁଙ୍କୁ ସୁଦ୍ଧା ପଇସାଟିଏ ଦେବି ନାହିଁ ।' ମହାଜନର ଏ ନିୟମ ଜମିଦାରଙ୍କୁ ଜଣା । ପଛକୁ ଜମିଦାର ଚାଣକ୍ୟଙ୍କର ମହାବାକ୍ୟ 'ଆତ୍ମାନଂ ସତତଂ ରକ୍ଷେତ୍ ଦାରୈରପି ଧନୈରପି' (ଦାରୈରପି ଧନୈରପି = ଦାରଣାଂଗ ଧନୈରପି = ଦାରଲଙ୍କାରଣୈରପି) ସ୍ମରଣ କରି ନିଜ ଘରର କେତେକ ଅଳଙ୍କାର ମହାଜନ ଘରେ ଥୋଇ ଟଙ୍କା ଆଣି ଥିଏଟର କରିବା ସିଦ୍ଧାନ୍ତ କଲେ ।

ଲେଖିବାକୁ ଏବେ ସହଜ ଲାଗିଲା, କିନ୍ତୁ 'ଅହୋ କିବା ଅଦ୍ଭୁତ ମନର ଗତି' ମନର ଗତି ଲେମ୍ପଲର ବାବଲ ଅପେକ୍ଷା ଚଞ୍ଚଳ; ଏକଥା ସିଦ୍ଧାନ୍ତ କରିବାକୁ ଜମିଦାରଙ୍କୁ ମୁହୂର୍ତ୍ତେ ସୁଦ୍ଧା ଲାଗିଲା ନାହିଁ ।

ଜମାଦାରଙ୍କୁ ସମ୍ବୋଧନ କରି ଚୌଧୁରୀ କହିଲେ, 'ଆପଣ ଯେତେବେଳେ କହିଲେଣି, ଆଉ କି ସେ କଥା ଅନ୍ୟ ହେବ ? ଟଙ୍କା କଥା ଯେବେ ଦରକାର ହେବ, ଆଣି ହାଜର କରିବି' ।

ବନ୍ଦୋବସ୍ତ କଚେରୀର ଆମଲା ମଧ୍ୟରୁ ଜଣେ ଦୁଇଜଣ ପ୍ରସ୍ତାବ

କଲେ ଯେ ଆଗାମୀ ଶନିବାର ଦିନ ସେ କଚେରୀରେ ତାମ୍ବୁ, ଚେୟାର, ଶତରଞ୍ଜି, ବେଞ୍ଚ ଇତ୍ୟାଦି ନିଲାମ ହେବାର ଅଛି, ଥିଏଟର ପାଇଁ ଆଣିବାର ହେଲେ ଆମେ ସେ ଦିନ ସମାଜ ସଭାରେ ଜଣାଇ ଦେବୁଁ ।

ମନ୍ମଥ ଉତ୍ତର ଦେଲା, 'ଗଛମେ କଠଲ୍, ଓଠମେ ତେଲ୍; ଛେଳି ନ ଦେଉଣୁ ବୋଦାକୁ ଗାଧିଆ ! ପରେ ବ୍ରାହ୍ମଣଙ୍କ ଘରେ ଶ୍ରାଦ୍ଧ ଭଳିଆ ହଉ, ଶ୍ରାଦ୍ଧ ସାମଗ୍ରୀ ଖାଲିକା ଦେଖିଲେ ଖାଟନ୍ତା । ଏଣେ ଖଣ୍ଡେ ପଦ ପଢ଼ିବ ନାହିଁ ।'

ଜମାଦାର ଚୌଧୁରୀଙ୍କ ପ୍ରତି ସସ୍ନେହ ଦୃଷ୍ଟି କରି ହର୍ଷଗଦ୍‌ଗଦ ସ୍ୱରରେ ସମ୍ବୋଧନ କଲେ, "ସାବାସ୍ ଚୌଧୁରୀ ! ଖାନ୍ଦାନ୍ ଘର ପିଲା ଯେତେ ଗରିବ ହେଲେ ଅମୀରୀ ମିଜାଜ୍ କ ଛାଡ଼ି ଯିବ ? ତେବେ ଏ ବର୍ଷ ହୋଇ ଯାଉ ଥିଏଟର କରିବା । ଖଣ୍ଡେ ନୂଆ ରଙ୍ଗଢଙ୍ଗିଆ ନାଟକ ବହି ଠିକ କର । କିଏ କଣ ହବ, ତାହା ମଧ୍ୟ ଠିକ୍ କରିଦିଅ, ଶୀଘ୍ର କାମ ଆରମ୍ଭ କରିବା । ଆମ ହୁକୁମରେ ସବୁ ହବ, କିନ୍ତୁ ଆମେ ଯେପରି କଷ୍ଟ କଥାରେ ପଦ'ରେ ଚିହ୍ନା ନ ପଡ଼ୁ । ସରକାରୀ କାମ ବଡ଼ ଜବାବ୍‌ଦେହୀ କାମ ।"

ମନ୍ମଥ ଜମାଦାରଙ୍କୁ ହାତ ଯୋଡ଼ି କହିଲା, "କେବେ ଥେଟର ହବ ବୋଲି ଆଜି ଯେଉଁଠି ନାଚ ବନ୍ଦ ନ ହୁଏ । ହାହି ଜମାଦାର ବାବୁଙ୍କର, ଆଜି ନାଚ ବନ୍ଦ ହବ ନାହିଁ । ଦଶାବରେ ଗୋଡ଼ ଦେଇ ବୁଡ଼ି ମରିବା କଥା ପରେ ହଉ ! ନା ଥେଟର, ତା ଆଜି ଘରେ ନାଚ ।"

ମୁଁ ମଧ୍ୟ ବଗ୍ଗିଲି, ଜମାଦାର ବାବୁଙ୍କର ଏ ଆଗ୍ରହ ସବୁଦିନେ ରହିଲେ ତ ହୁଏ । ନଇଲେ ନୂଆ ନୂଆ ଦଳ ହେଉଛି । ପରେ ସେ କଥା ପଚାରେ କିଏ ?

ରାତି ପ୍ରାୟ ପଡ଼ିଆସି ବଳିଥିବାରୁ ସମସ୍ତେ ଯିବାକୁ ଉଦ୍ୟତ ହେଲେ । ମହାଜନ ସାହୁଙ୍କଠାରେ ଭେଟ ହେଲା ମୋଟ ତେଇଶ ୨ ସେଚ;

ଚୌକିଦାରଙ୍କୁ ଭଣ୍ଡାରଙ୍କ ଘରକୁ ପଠାଗଲା, ଭଣ୍ଡାର ଆସି ବେଠିରେ ମଶାଲ୍ ଧରବେ । ଶିବ ସେଠାଠାରୁ ହୁକୁମନାମା ଗଲା ଖଡ଼େଦମ୍ ମସାଲଚଳା ଢକ ବଡ଼ା ଅଣି ହାଜର କରବ । ନାଟବାଲାଙ୍କ ନମନ୍ତେ ଜଲଖିଆ, ମୋଟ ତେଲ, ଫୁଲ ଇତ୍ୟାଦର ବରାଦ ଚୌଧୁରୀଙ୍କଠାରେ ରହିଲା । ଜମୀଦାର ବାବୁ ଗ୍ରାମର ଚୌକଦାର ଓ ଦଫାଦାରଙ୍କୁ ଯାତ୍ରାକୁ ଦରେଗ୍ ପିନ୍ଧ ଆସିବାକୁ ହୁକୁମ ଦେଲାରୁ ଆମ୍ଭେମାନେ ଟୁଙ୍ଗୀରୁ ପ୍ରସ୍ଥାନ କଲୁଁ ।



## ତୃତୀୟ ସନ୍ଧ୍ୟା ।

---

ଆଜ ଫାଲ୍ଗୁନ ମାସ । ବସନ୍ତ ସମୟ । ଦୋଲ ପୂର୍ଣ୍ଣିମା ଆଉ ୧୦, ୧୨ ଦିନ ଅଛି । ଆଜ ବହୁଗ୍ରାମ ମହୁଗମ ଦୁର୍ଗାରେ ନାହିଁ ମୁଁ, ପଣ୍ଡିତ ମହାଶୟ, ମହାଜନ ସାହୁ, ଜମିଦାରଙ୍କ ତହସିଲଦାର, ଗ୍ରାମର ସର୍ଦ୍ଦାର ଅଖଡ଼ାର ଗୁରୁ ଓ ଜମିଦାରଙ୍କ ଗୋରୁଜଗା ଗୃହର ଗହୃଡ଼ ଟୋକା ଉପସ୍ଥିତ ଅଛୁଁ ।

ଜମିଦାରଙ୍କ ତହସିଲଦାର ଏ ଗ୍ରାମରେ ନ ଥାନ୍ତି । ଗ୍ରାମରୁ ପାଞ୍ଚ କୋଶ ଦୂର ଜମିଦାର ତାଲୁକେ ମଡ଼ାଗଣ୍ଡିଆ କଚେରିରେ ତହସିଲ-ଦାରି କରନ୍ତି ଓ ବିଶେଷ କାର୍ଯ୍ୟ ଉପଲକ୍ଷରେ ଜମିଦାରଙ୍କ ଘରଠାରୁ ଆସନ୍ତି । ଆଜ ତହସିଲଦାର ହାତରେ ଜମିଦାରଙ୍କ ସ୍ୱାକ୍ଷରଯୁକ୍ତ ଖଣ୍ଡେ ତାଲପତ୍ର ହୁକୁମନାମା ଧରି ବଡ଼ ଭାବିତ ଅଛନ୍ତି । ଦୋଲ ଖର୍ଚ୍ଚ ତାଲିକା ଦିଆ ଯାଇଅଛି । କିନ୍ତୁ ଏ ବର୍ଷ ଫସଲର ଅବସ୍ଥା ଭଲ ନ ଥିବାରୁ ପ୍ରଜାମାନେ ଖାଇବା ବିନା ଗଡ ମରୁଅଛନ୍ତି । କପର ଟଙ୍କା ଅସୁଲ ହେଲେ ଜମିଦାରଙ୍କ ଘରକୁ ଦୋଲ ସରଞ୍ଜାମ ଓ ଟଙ୍କା ଅସିବ, ଏହି କଥା ନେଇ ଆଜ ତହସିଲଦାରେ ବ୍ୟସ୍ତ । ତହସିଲଦାରେ ଯାହାକୁ ଦେଖୁଛନ୍ତି, ତା ଆଗରେ ତାଲପତ୍ର ହୁକୁମନାମା ଖଣ୍ଡିକ ଥରେ ଅମୂଲ ପାଠ କରି ଆପଣାର ଦୁଃଖ-କାହାଣୀ ପ୍ରକାଶ କରୁଅଛନ୍ତି । ଆମ୍ଭମାନଙ୍କୁ ଦେଖି ତହସିଲଦାର ଆଖିରୁ କରଣୀ ଅକ୍ଷରରେ ଲେଖା ହୁକୁମନାମା ଖଣ୍ଡିକ କାଢ଼ି ପାଠ କଲେ । ( ଅହା ! ବଡ଼ ଦୁଃଖର ବିଷୟ, ୨ । ୩ ଛପାଖାନା ଭୁଲ କରିଛି, କରଣୀ ଟାଇପ୍ (type) ହେଉଁଠାରେ ନାହିଁ । ଯେଉଁମାନଙ୍କଠାରେ ଅଛି, ସେମାନେ କରଣୀ ଅକ୍ଷର ଛପିବେ ବୋଲି ଟଙ୍କି ଘର୍ଜ କଲେ । ଅଗତ୍ୟା ମନର କଥା ମନରେ ପଶି ରହିଲା । )

ଶ୍ରୀଶ୍ରୀ ଜମିଦାର ଚଉଧୁରୀ

ଶ୍ରୀଶ୍ରୀ ରଘୁନାଥ ଚଉଧୁରୀଙ୍କର

ତହସ୍ଲୀଦାର ଲକ୍ଷ୍ମୀ ଦୟାଳଙ୍କୁ ଯେ ଲିଖି । ପ୍ରେ ନାମକ୍ରେ ଲେଖା ଗଲା କି ଏ ଚଉଗ୍ରୀ ଙ୍କ । ସରକାର ଓ ଟଙ୍କା ଦୋଲ ଶ୍ରୀର ହକାସେ ଦ୍ୱାଦସି ଦିନ ଅଣି ହାଜିର ହେବ । ଏ କାମକୁ ଅଉ ଅକଟ ଯାଣିମ । ଏ ତାଲିକା । ମୁ ।

| | |
|---|---|
| ନୂଆ ନାମକ୍ରେ | ଟ ୫୫ ୯/ ୭ ୩ |
| କଟକ ଶହିଦା ନାମକ୍ରେ | ଟ ୪୩ ୫ ୬ ଯ |
| ନାଉ ବାଜା | ପ ୬ ଞ୍ଜା |
| କୁଟେନ ଏସ୍ତୁ | ମ ୬ ଶ୍ରଲ |
| ବେଠିଆ ଭଣ୍ଡାର | ଯ ୭ ଣ |
| ମଯାଲ କନା | ଗୋ ୪ ଛି |
| ଦବାନ ଖାନ୍ଧିଆ ଗଉଡ଼ | ଯ ୮ ଣ |
| ବଯଣ୍ଡୀ | ଯ ୧୦ ଣ |

ଅନ୍ୟ ଅନ୍ୟ ସରଞ୍ଜାମ ମାମୁଲ ତାଲିକା । ମୁ । ପଠାଇବ । ତାରଣ ମୁ ସଦର । ଏ ହୁକୁମନାମାକୁ ଗହିର କରିବ । ଏ ।

(ସ୍ୱାକ୍ଷର) ଶ୍ରୀଶ୍ରୀ ରଘୁନାଥ ଚଉଧୁରୀଏ

ତହସିଲଦାର ଅପଣା ଦୁଃଖ-କାହାଣୀ ଅମ୍ଭମାନଙ୍କୁ କହୁଅଛନ୍ତି, ଏହି ସମୟରେ ମାଷ୍ଟର ମହାଶୟ ଗ୍ରାମ ଅନ୍ତୁ ଗୁଣ ଗୁଣ ହୋଇ ଅସିଲେ—

'Cukoo, jug jug pui tui ta woo' ମୁଁ କହିଲି—ମାଷ୍ଟର ମହାଶୟ ! ଆପଣ ବର୍ତ୍ତମାନ Palgrave's Lyrics ବନ୍ଦ କରି ଅହିଲେ ଧର ?

ମାଷ୍ଟର ମହାଶୟ—ହଁ ସେ book (ବହି) ଅନେକ ଦିନ ତଳେ ପଢ଼ିଥିଲି । ଅଜ Evening (ସନ୍ଧ୍ୟା) ପୂର୍ବରୁ କୋକିଳର song (ଗୀତ) ଶୁଣି ମନେ ପଡ଼ଗଲା । ଅହା ! spring (ବସନ୍ତ) କି ସୁଖର

time (ସମୟ) ! ଏ ବର୍ଷ ବିଦେଶରେ spring (ବସନ୍ତଟା) ଦୁଃଖରେ କଟିଗଲା । ଏ spring (ବସନ୍ତ) ବିଷୟରେ ମୁଁ ଇଂରାଜୀ ଓଡ଼ିଆ ମିଶାଇ ଗୋଟି ଏ song (ଗୀତ) ଲେଖିଛି, ଶୁଣନ୍ତୁ । ଏ ଗୀତରେ ଅଦ୍ୱୈ ପ୍ରାନ୍ତ ସମ୍ମିଳ ଅଛି । ଏ ଗୀତଟି କିପରି Newspaper ରେ (ସମ୍ବାଦପତ୍ରରେ) ଛପା ହେବ ?

Future ସାହେବ ପୁସ୍ତକ ଖଣ୍ଡକ ମୋ ମନେ ପଡ଼ିଲା । ଇଂରାଜୀ ଓ ଓଡ଼ିଆ ମିଶା ଅଦ୍ୱୈ ପ୍ରାନ୍ତ ସମ୍ମିଳ—ମଣିକାଞ୍ଚନସଂଯୋଗ— ଅବଲୋକନିକାରୁ ମୁଁ ଗୀତଟିକୁ କଳ୍ପନା କରି ନେଲି, ମୋହବଶରେ ମାଷ୍ଟର ମହାଶୟଙ୍କୁ କିଛି କହି ପାରିଲି ନାହିଁ । ମନେ ମନେ କହିଲି, 'ପ୍ରାର୍ଥନା କରୁଛି, ମାଫ୍ କରନ୍ତୁ । ଦିନଯାକ ଶୁଷ୍କ ଚର୍ଚ୍ଚାରେ ବିରକ୍ତ ବୋଧ ହେବାରୁ ମନ ପରିବର୍ତ୍ତନ ନିମନ୍ତେ ଟୁଙ୍ଗୀକୁ ଅସେ; ତନ୍ତୁ ଏଠାରେ ମଧ୍ୟ ଅତ୍ୟାଗୃହ !'

ଏହା ବିଚାରୁଛି, ଏହି ସମୟରେ ପଣ୍ଡିତ ମହାଶୟ ବିକ୍ରମଜୋରରେ ଘାନ ମାନ ମିଳାଇ ଗାଇ ଉଠିଲେ—

ତୃଷାର୍ତ୍ତସ୍ୟ ସ୍ୱାଦନଶୀଳପ୍ରକାସ୍ୟ ପୁଂସ୍ତ୍ରୋକଲୋଯନ୍ତ୍ରୀରଂ ନ୍ୟୁକ୍ତ ।
ମନସ୍ୱିନୀମାନଜପାଭଦକ୍ଷଂ ତଦେବ ଜାତଂ ବଚନଂ ସ୍ମରସ୍ୟ ।

ଅବସର ପାଇ ମୁଁ ମାଷ୍ଟରଙ୍କୁ ପଚାରିଲି,ସେ ଗୀତଟି ପରେ ଦେଖିବା, ମାଷ୍ଟର ବାବୁ ! ଆପଣଙ୍କୁ ବସନ୍ତ ସମୟ କିପରି ଲାଗେ ?

ମାଷ୍ଟର—home (ଗୃହ)ରେ ଥିଲେ ଖୁବ glad (ଆନନ୍ଦିତ) ହୁଏ; କିନ୍ତୁ ବିଦେଶରେ ଥିଲେ ବଡ଼ sorry (ଦୁଃଖିତ) ହୁଏ । ବିଶେଷତଃ କୋକିଲର song (ଗୀତ) ଶୁଣି mind (ମନ) ଅସ୍ଥିର ହୋଇ ପଡ଼େ ନାହିଁ । କୋକିଳର song (ଗୀତ) ବଡ଼ ଉତ୍ତେଜକ ।

ତହସିଲଦାରେ କହିଲେ, ମାଷ୍ଟରେ ! କୋକିଳର ଗୀତ ତ ମିଠା ଲାଗେ । ତୁମେ କିପରି କହୁଛ ଯେ କୋକିଳ ବଡ଼ ଡେଙ୍ଗା ।

ମାଷ୍ଟର—ତହସିଲଦାରେ, କୋକିଳ ବଡ଼ ଡେଙ୍ଗ ବୋଲି ମୁଁ

କହୁ ନାହିଁ । କୋକିଳର ରବ ଶୁଣିଲେ ମନ "ଚଞ୍ଚଳ ହୁଏ, ମୁଁ ଏ ଅର୍ଥରେ କହିଲି । ( ଧନ୍ୟ ଚନ୍ଦ୍ରସେନବାବୁରେ ! ତୁମ୍ଭ ଉପରେ ଆଜ ଅନେକ ଚେଷ୍ଟା କରି ଦେଲେ ମାଷ୍ଟର ମହାଶୟ ଏତେକ କଥା ଶୁଦ୍ଧ ଓଡ଼ିଆରେ କହୁଥିଲେ; ତେବେ ସୁଦ୍ଧା ୨।୩ ସ୍ଥାନରେ ପ୍ରଥମେ ଇଂରାଜୀ ଶବ୍ଦ ଲଗାଉଥିଲେ, କିନ୍ତୁ ପୁନର୍ବାର ତାକୁ ପ୍ରତ୍ୟାହାର କରି ଓଡ଼ିଆରେ ବାକ୍ୟ ସମାପ୍ତ କଲେ । )

ମୁଁ କହିଲି—ମାଷ୍ଟର ମହାଶୟ ! ବୁଝିଲି; ଯେପରି ମୁରବ୍ବୀ ଯୋଗରେ ଜଣେ ଜଣେ ଲୋକ କର୍ମଣ ଦେଲେ ସୁଦ୍ଧା ଉଚ୍ଚପଦ ପାନ୍ତି, ସାହିତ୍ୟ-କ୍ଷେତ୍ରରେ ମଧ୍ୟ ସେହିପରି । ଜଣେ ବିଖ୍ୟାତ କବି ନିଜ ଅନୁଭବରୁ ଗୋଟିଏ କଥା ଲେଖି ଯାଇଅଛନ୍ତି । ମୁରବ୍ବୀ ଯୋଗରୁ ସେ କଥାଟି ଜାତୀୟ ଭାବରେ ଲଖିଗଲା । କୋକିଳ ରବ ଶୁଣି ବିରହୀମାନେ ଝୁରି ମରନ୍ତି, ଏହା କେବଳ ଏ ଦେଶର କଥା । ମନର ଭାବ ଅନୁସାରେ ବାହ୍ୟ ବସ୍ତୁମାନଙ୍କରୁ ରସ ନିଃସୃତ ହୁଏ । ଦୁଃଖୀ ଲୋକ ମନରେ ବାହ୍ୟ ବସ୍ତୁମାନ ଦୁଃଖର ଉଦ୍ରେକ କରାଏ । ଦୁଃଖୀ ଲୋକ ମନରେ ଦୁଃଖର, କାମୀ ମନରେ କାମର, ପାପୀ ମନରେ ପାପର, ଧାର୍ମିକ ମନରେ ଧର୍ମର ଉଦ୍ରେକ ହୁଏ । କୋକିଳକୁ କୌଣସି ପ୍ରଧାନ କବି 'କାମଦୂତ' ବୋଲି କହି ଯାଇଅଛନ୍ତି । ସେଥିନିମନ୍ତେ, କୃଷ୍ଣଲୀଳା ଆଦିରେ କୋକିଳର ନାମ ପଡ଼ିଲେ ଅନ୍ୟ କବିମାନେ 'କାମଦୂତ' ଶବ୍ଦଟି ପ୍ରୟୋଗ କରି ବସିଲେ । କିନ୍ତୁ 'କୋଇଲି ଲୋ କେଶବ ଯେ ମଥୁରାକୁ ଗଲା, ତାହା ବୋଲେ ପଞ୍ଚ ପୁତ୍ର ବାହୁଡ଼ ନଇଲା ଲୋ କୋଇଲି' ଏଠାରେ କୋକିଳ 'କାମଦୂତ' ନ ହୋଇ 'ଶୋକଦୂତ' ହେଲା କିପରି ? କୋକିଳର ରବ ଶୁଣି ଇଂଲଣ୍ଡୀୟ ଜଣେ ବିଖ୍ୟାତ କବିଙ୍କ ମନରେ ପାଠ୍ୟାବସ୍ଥାର ସ୍ମୃତି ଜାଗ୍ରତ ହେଲା କିପରି ? ମନର ଭାବ ଯେନିସନ୍ତ କଥା । ମନେ କରନ୍ତୁ ବସନ୍ତ କାଳରେ ଜଣେ କାମାର୍ତ୍ତ ବିରହୀ ବୃକ୍ଷତଳରେ ରହି କୋକିଳ ରବ ଶୁଣି କୋକିଳ ଉପରେ

ବଉଳ ଗଛିଗଲେ ! ତା ବୋଲି କି କୋକିଳ ସ୍ୱରରେ ସମସ୍ତେ ଝାମାଉଁ ଦେବେ ? ମୁନିମାନେ ତ ଦେଢେ ବସନ୍ତାଗମରେ ଆଶ୍ରମର ବୃନ୍ଦାକୁ ପଦା ଦ୍ୱାର ପକାଇ ଥାନ୍ତି । ବିଶେଷତଃ ଅମ୍ଭେମାନେ ଶୁଣିଛୁ ଆଶ୍ରମରେ ଆମ୍ରଗଛମାନ ମଧ୍ୟ ଥାଏ । କୋକିଳ ଆମ୍ବ ବଉଳର ବିଶେଷ ପ୍ରିୟ । ପ୍ରକୃତ କଥା କହିବାକୁ ଗଲେ, ମାଷ୍ଟର ମହାଶୟ ! କୋକିଳ ରାବ ଶୁଣିଲେ ମୋ ମନ ବିରହେ ନେତ୍ରା ଅତଳୁ ଦେଇ ପାରେ ନାହିଁ । ମୋର ପ୍ରାଣପ୍ରତିମା ତିନି ବର୍ଷର କନ୍ୟାଟି କଥା ମନରେ ପଡ଼େ । ଦିନେ ସେ ଗତ ଫାଲ୍ଗୁନ ଋତୁଥିବା ସମୟରେ କୋକିଳ ରାବ ଶୁଣି ପଚାରିଲା, "ଏ କଅଣ ?" ମୁଁ କହିଲି, "ଏ କୋଇଲି ବୋଲି ଗୋଟିଏ ଚଢ଼େଇର ରାବ ।" ସେ ଉତ୍ତର କରିଥିଲା, "ମୋର ଯିମିତି ଗୋଟିଏ 'ନନା' (ବାପା) ଗୋଟିଏ 'ବୋଉ' (ମା) ଅଛନ୍ତି, ତାର ସିମିତି ଅଛନ୍ତି କି ?" ମୁଁ ପ୍ରେମରେ ହସି ହସି କହିଥିଲି, "ହଁ" । ସେ କହିଲା "ଆ ବୋଉ ତାକୁ ଦୁଧ ନ ଦେଲାରୁ ସେ କଅଣ କାନ୍ଦୁଛି ?" ତାହାର ମାତା ମୋ ଆଡ଼କୁ ଚାହିଁ ମୁରକି ମୁରକି ହସି ତାକୁ କହିଥିଲା "ତା ନନା ତାକୁ ମିଠେଇ ନ ଦେଲାରୁ ସେ ଅବୁଝା ହୋଇ କାନ୍ଦୁଛି ।" ଅମ୍ଭମାନଙ୍କ ଦେଶରେ ବସନ୍ତର ଆମୋଦ ଆନନ୍ଦ 'ହୋରି' ଗୀତରେ ଶେଷ ହୁଏ ।

ଆମ୍ବ ବଉଳର ନାମୋଲ୍ଲେଖ ଶୁଣି ଜମିଦାରଙ୍କ ନିକଟସ୍ଥ ଗାଡ଼ିରେ ଟୋକା କହିଲା, 'ଗୋଦସ୍ତା ଖୁବ୍ ଆମ୍ବ ଖାଇବାକୁ ମିଳିଥିଲା । ଏ ସନ କୁହୁଡ଼ିରେ ଆମ୍ବ ବଉଳ ଯାକ ଜଳି ଗଲାଣି ।

ମହାଜନ ଟିକିଏ ତୀବ୍ର ଦୃଷ୍ଟିରେ ଗାଡ଼ିଆ ଟୋକା ଆଡ଼କୁ ଚାହିଁ କହିଲେ, 'ଠାକୁରଙ୍କ ଇଚ୍ଛାରୁ ଏ ବର୍ଷ ଆମ୍ବଟା ମହରଗ ହୋଇଲ ଆଉ ୨ବର୍ଷ ତୁଟି ଭରଣା ହୋଇ ଯିବ । ଗଲା ବର୍ଷ ଆମ୍ବ ପାଚିବା ଯାଏ ଥରେ ଖୁବା ବତାସ ହୋଇ ନାହିଁ ।' ମହାଜନଙ୍କ ପାଟିରୁ ପଇସା ଗଣି ତଳ କାମୁଡ଼ି ବସିଲେ ।

ଗଉଡ଼ ଟୋକା—ଯାଆନ୍ତେ, ଆମ୍ଭ ବେଶି ହେଲେ ଗଉଡ଼ ଗୁରୁବାଙ୍କୁ ଗୋଟାଏ ଅଧେ ମିଳନ୍ତା; ଆମ୍ଭ ମହରଗ ହେଲେ ଗଉଡ଼ ଗୁରୁବା ମରିଯିବେ ।

ମହାଜନ—ତେବେ କଣ ଆମେ ବେପାର କରନ୍ତୁ ମାଗଣା ? ଘରୁ ଖାଇ କଣ ବଣିଜ ଶିଖିବୁ ? ତୁମେମାନେ ଥିଲେ ହେଲେ, ମଲେ ହେଲେ ?

( ମୁଁ ମନେ ମନେ କହୁଥିଲି, ମହାଜନେ ! ଚିରଜୀବୀ ହୁଅ ! ତୁମ୍ଭ-ମାନଙ୍କ ପରି ମହାଜନଙ୍କ ଦ୍ୱାରା ପ୍ରକୃତରେ ଦେଶର ଉପକାର । ଦେଶରେ ଦୁର୍ଭିକ୍ଷ ହେଲେ ତୁମ୍ଭର ଅନ୍ତତଃ ଦୁଇ ପଇସା ଲାଭ ବଢିବ । ଗୋଣ୍ଡା ସାମ୍ନାର ତୁମ୍ଭର କିଛି ପ୍ରଭେଦ ନାହିଁ । ନଗଦ ଲାଭ ହେଲା ତୁମ୍ଭଙ୍କୁ ଏପରି ବେଢି ରହିଛି ଯେ ନଗଦ ଲାଭ କିଛି ପାଇଲେ ଦେଶ ଉତ୍ସନ୍ନ ହେଉ ପଛକେ କିଛି କ୍ଷତି ନାହିଁ । କିନ୍ତୁ ଠିକଏ ଭାବି ଦେଖୁ ନାହିଁ ଯେ ଦେଶ ଉତ୍ସନ୍ନ ହେଲେ ତୁମ୍ଭ ଲାଭ ବା କାହୁଁ ରହିବ ? ଅହା ! ଏ ଦେଶର ଶିକ୍ଷିତ ଲୋକମାନେ ଉମେଦ୍ୱାର ନ ହୋଇ ମହାଜନୀ ବ୍ୟବସାୟରେ ମନ ବଳାଇଲେ ଦେଶର କେତେ ଉପକାର ହୁଅନ୍ତା ! କେତେବାର କହିଚନ୍ତି ଯେ ଯେଉଁଠାରେ ସୁବିଧା ଅଛି, ସେଠାରେ ଇଚ୍ଛା ନାହିଁ ଓ ଯେଉଁ ଲୋକଙ୍କର ଇଚ୍ଛା ଅଛି, ସେମାନଙ୍କର ସୁବିଧା ନାହିଁ । ଅଭିଭାବକମାନେ ନିଜ ନିଜ ବାଳକମାନଙ୍କ ସମ୍ମୁଖରେ ଉଚ୍ଚ ଚାକିରିର ଆଦର୍ଶ ନ ରଖି ବାଣିଜ୍ୟ, କୃଷି ଇତ୍ୟାଦିର ଆଦର୍ଶ ରଖୁଥିଲେ ଦେଶ ଉନ୍ନତ ହୁଅନ୍ତା । ପୁଅ ଚାକିରି କରି ନ ପାରିଲେ ସବୁ ବ୍ୟର୍ଥ ହେଲା ! ଧନ୍ୟ ଆମ୍ଭମାନଙ୍କ ଦେଶ !!! ) ଗଉଡ଼ ଟୋକା ଉପରେ ଆଉ କିଛି ଗାଳିବୃଷ୍ଟି ହେବା ଭୟରେ ମୁଁ କଥାକୁ ଅନ୍ୟ ଆଡ଼େ ଫେରାଇଲି ।

ମୁଁ କହିଲି—ପଣ୍ଡିତ ମହାଶୟ ! ବସନ୍ତ କାଳଟା ଆନନ୍ଦର ଦିନ । ବସନ୍ତ କାଳରେ ହିନ୍ଦୁମାନଙ୍କର ଶ୍ରୀପଞ୍ଚମୀ, ବସନ୍ତରାସ, ଶିବରାତ୍ରି, ଦୋଳ, ପଞ୍ଚଦୋଳ ଇତ୍ୟାଦି ଅନେକ ପର୍ବ ପଡେ । ବସନ୍ତକାଳରେ ଗୃହିମାନେ ମଧ୍ୟ ଅବସର ପାଆନ୍ତି ।

ତହସିଲଦାରେ କହିଲେ—ଚଷାମାନଙ୍କର ଅବନତର ଦିନ କାହିଁ ? ଏ ସମୟରେ ଯିବା ସେମାନେ ହାଲବାଡ଼ି ଧନ୍ଦାରୁ ଫୁରସତ ପାନ୍ତି, ହେଲେ କଅଣ ହେବ, ଏତିକି ବେଳେ ଖଜଣା ଅମଳର ଜୁଲମ୍ ଲାଗେ ଚଷାମାନଙ୍କର ସବୁ ଦିନେ ଦୁଃଖ ।

ମାଷ୍ଟର ମହାଶୟ କହିଲେ—ତହସିଲଦାରେ ! ଆମ୍ଭମାନଙ୍କ country (ଓଃ ଗମ୍ ! ) ଦେଶରେ ସମସ୍ତଙ୍କର ଧାରଣା ଯେ ମୂର୍ଖର ପ୍ରଧାନ ପେଶା ଗୃତ । ପଢ଼ି ଶୁଣି ଜାଣିଲେ ଗୃତରେ mind ( ଓଃ ! ) ମନ ଦେବାର ଯୋଗାଏ ନାହିଁ । ନିତାନ୍ତ ଅନ୍ୟ କିଛି ଉପାୟ ନ ମିଳିଲେ ଲୋକେ ଗୃତ କରନ୍ତି ।

ମୁଁ ଅଙ୍ଗୁଳିଗୁଡ଼ାକୁ ଲକ୍ଷ କରି ନ ଜାଣିଲା ପରି ହୋଇ ତହସିଲ-ଦାରଙ୍କୁ କହିଲି—ଆମ୍ଭମାନଙ୍କ ଦେଶର ମୂର୍ଖ ଲୋକଙ୍କୁ ଯୋଡ଼ିଏ କଥା ସାଙ୍ଗେ । ୧—ଗୃତ; ତହିଁରେ ନୂଆ କିଛି ନାହିଁ । ବାପ ଅଜାଙ୍କ ଅମଳର ପଦ୍ଧତି ଅନୁସାରେ ସବୁ ହେବ । ଫଳ ମଧ୍ୟ ତଦ୍ଧିଜ ଗୁହିଁ । ପୂର୍ବ ପଦ୍ଧତିରେ ଗୃତ କଲେ ଯେଉଁ ଜମିରେ ୫ ଜଣଙ୍କର ପେଟ ପୂରୁଥିଲା, ଆଜି ତହିଁର ବା ୧୦ ଜଣ ତହିଁରେ ପୋଷି ହେବେ ? ଗୃତ ବିଷୟ ଯଦି ଶିକ୍ଷିତମାନେ ଚର୍ଚ୍ଚା କରି କୃଷିମାନଙ୍କୁ ଶିକ୍ଷା ଓ ସାହାଯ୍ୟ ଦିଅନ୍ତି, ତେବେ ଗୃତ ଖୁବ୍ ଉନ୍ନତ କରନ୍ତି । ଓ କୃଷିରେ ସର୍ବାପେକ୍ଷା ଅଧିକ ଲାଭ ହୁଅନ୍ତା । ତେବେ ମୂର୍ଖମାନେ ଗୃତରେ ଲାଭ-ବାନ୍ ହେବା ଭଳି ସେମାନଙ୍କର ବୁଦ୍ଧି ଓ ମୂଳଧନ କାହିଁ ?

୨—ଆମ୍ଭମାନଙ୍କ ଦେଶର ସଙ୍କୀର୍ତ୍ତନ । ସଙ୍କୀର୍ତ୍ତନର ଉଦ୍ଦେଶ୍ୟ ଆମ୍ଭମାନଙ୍କ ଦେଶର ଲୋକମାନେ ଅନେକ ଦିନରୁ ଭୁଲି ଯାଇଲେଣି । ଓଡ଼ିଶାର ସଙ୍କୀର୍ତ୍ତନ ବଙ୍ଗଳା ସଙ୍କୀର୍ତ୍ତନର ବିକୃତ ଅବସ୍ଥା । ବଙ୍ଗଳା ଗୀତ ବଙ୍ଗଳା ନ ଜାଣିବା ମୂର୍ଖମାନଙ୍କ ମୁହଁରେ କପରି ଶୋଭି ପାଏ, ତାହା ଯେ ଥରେ ନ ଶୁଣିଛି, ସେ ବୁଝି ପାରିବ ନାହିଁ । ଓଡ଼ିଶାର ସଙ୍କୀର୍ତ୍ତନରେ କେବଳ ଖୋଳ କରତାଳ ମାତ୍ରକେ ବାହାଦୁରୀ । ଯେ

ଯେତେକ ଶ୍ରୁତିକଠୋର ସ୍ୱରରେ ଖୋଳ ମୃଦଙ୍ଗ ବାଜେଇ ପାରନ୍ତି, ତାହାର ସଙ୍କୀର୍ତ୍ତନରେ ସେତେକ ବାହାବୁଣି । ଶିକ୍ଷିତମାନଙ୍କର ଏଥିପ୍ରତି ଟିକିଏ ଦୃଷ୍ଟି ରହିଲେ ଅବଶ୍ୟ ବର୍ତ୍ତମାନ ପ୍ରଚଳିତ ବିକୃତ ଓଡ଼ିଆ ସଙ୍କୀର୍ତ୍ତନ ଅନେକ ପରିମାଣରେ ପରିମାର୍ଜିତ ହୁଅନ୍ତା । କାହିଁ ହରି-ନାମର ମିଷ୍ଟତା, କାହିଁ ଆମ୍ଭମାନଙ୍କ ଦେଶପ୍ରଚଳିତ କର୍ଣ୍ଣବଧିରକାରୀ ଅର୍ଥଶୂନ୍ୟ ପ୍ରଳାପ । ସଙ୍କୀର୍ତ୍ତନର ଭାବ ଯାହା ଥିଲା ତାହା ହେଉ, ବାଉଅଣିଟା ଖୋଳ ତାଳରେ ନ ହେଲେ ସମ୍ପ୍ରଦାୟ କଥା ବ୍ୟର୍ଥ ହେଲା । କରେ ବାବୁ ! ଓଡ଼ିଆ ଭାଷା ଥାଉଁ ଥାଉଁ ବଙ୍ଗଳା କାହିଁକି ? ଏଥିରେ ମଧ୍ୟ ସେମାନଙ୍କର ଦୋଷ ନାହିଁ । ଓଡ଼ିଆରେ ସଙ୍କୀର୍ତ୍ତନ ଗୀତ କେହି କରି ନ ଥିବାରୁ ମୂର୍ଖ ଓ ଚଷାମାନେ ଯାହା ପାଇଲେ ତାହା ଧରିଲେ । ପ୍ରଚଳିତ ସଙ୍କୀର୍ତ୍ତନ ବଙ୍ଗଳାରୁ ଆମଦାନୀ, ଚୈତନ୍ୟଙ୍କ ପ୍ରଚାରିତ ଧର୍ମ ଓଡ଼ିଶାରେ ବ୍ୟାପିବାର ପରିଚୟ ଏହି ସଙ୍କୀର୍ତ୍ତନ; ଏସବୁ ମାନୀବନ୍ଧା । ଦୂରକୀ ପରିବର୍ତ୍ତରେ ତ ଗୋଷ୍ଠୀଏ ଲେଖାଏଁ ତାଁର ଅଗତ୍ରୁ ଅଛି ।

(ମୁଁ ସଙ୍କୀର୍ତ୍ତନକୁ ନିନ୍ଦା କରିବାରୁ ଅଖଡ଼ାପୁରୁ ମୋ ଆଡ଼କୁ ବକ୍ର ଦୃଷ୍ଟିରେ ଚାହିଁଲେ—ତହସିଲଦାରେ ସେ ଧ୍ୟାନ ଯୋଗ କଲେ, ମହାଜନ ସାହୁ ମୋ ଆଡ଼କୁ ଚାହିଁ ମୁହଁ ମୋଡ଼ି ଦେଲେ ।)

ଏହି ସମୟରେ ଜମିଦାରଙ୍କ ଘରର 'ସୁନା' ପୋଇଲି ଆସି ପହଞ୍ଚିଲା ଓ ଆମ୍ଭମାନଙ୍କୁ ଦେଖି ନିଜର କେତେ ଦୁଃଖ କହି ବସିଲା ।

ମାଷ୍ଟର ମହାଶୟ ପଚାରିଲେ 'ସୁନା, ତୋ ଘର ତ ଏଠେଇ ନୁହେଁ । ତୁ ଏଠେଇଁ କପରି ରହିଲୁ ?'

(ମୁଁ ମାଷ୍ଟର ମହାଶୟଙ୍କୁ ହାତ ଟିପି ନିବାରଣ କଲି । କିନ୍ତୁ ଚେଷ୍ଟା ନିଷ୍ଫଳ ହେଲା ।)

ସୁନା କାନ୍ଦି କାନ୍ଦି କହିଲା, 'ମୋ କରମ; କି ଘର ଛାଡ଼ିଲି! ମୁଁ ତ ଜାଣିଥିଲି ସବୁ ଦିନେ ମୋ ବଳ ବୟସ ଥିବ, ହାତ ଗୋଡ଼ ଚଳୁ

ଥିବ, ଯୋଉଁଠି ବସିବି ଖାଇବ । 'ଦେ କଉଡ଼ି ଖା ପିଠା, ଏଥି ପେଇଁ କେଉଁ ଦାନ୍ତ ନକୁଟା ?' ବୟସ ଗଳାରୁ ଯେ ପାଉଛ ସେ ପଦେ ଟାପସ କରୁଛ, ଟିକଏ ଅଡ଼ଭ ପନ୍ଦ ନ କଲେ ସାଅନ୍ତାଣୀ ନାଆଁ ବାଣ । ରଡ଼େଇ ଚଇଁଗୁଣୀଙ୍କର ଗ ବାସ ଅଛି, ମୋର ବୁଢ଼ୀ ଦନେ କଛି ଅଣ୍ଡା ନାହିଁ ।' ଏହା କହି ପୁନା କଇଁ କଇଁ କାନ୍ଦିଲା । ଅମ୍ଭେମାନେ ଦେଖିଲୁଁ ଯେ ପୁନାର ପୂର୍ବସ୍ମୃତି ଜାଗରିତ କରାଇବା ଅପାଈତଃ ଭଦ୍ରତାନୁମୋଦିତ ନୁହେଁ । ବିଶେଷତଃ ଜମିଦାରଙ୍କ ଘର ।

ପୁନାକୁ ଅନେକ ପ୍ରକାର ବୋଧ ସୋଧ କଲୁଁ । ଦେଶର କେତେକ ଲୁକରେ 'ପୋଇଲି' ରଖିବା ପ୍ରଥାକୁ ମନେ ମନେ ଶତସହସ୍ର ଧନ୍ୟବାଦ ଦେଲୁଁ ଓ ସମାଜନେତାମାନଙ୍କୁ ଶତପ୍ରହ୍ଲଦଧୂନଃ ସ୍ତୁତି କେତେ କେତେ ଆଶୀର୍ବାଦ କରି ଟୁଙ୍ଗୀରୁ ପ୍ରସ୍ଥାନ କଲୁଁ । ପୁନା କିନ୍ତୁ ଜମିଦାରଙ୍କ ଘରୁ ଲୁଚି ଆସିଛି ବୋଲି ଅମ୍ଭେମାନେ ଯେତେ ବୁଝାଇଲେ ସୁଦ୍ଧା ସେ ଟୁଙ୍ଗୀ ପିଣ୍ଡାରେ ବସି ରହିଲା । ପର ଦିନ ଶୁଣିଲୁଁ, ପୁନା ଅନ୍ୟ ଗ୍ରାମରେ ନାହିଁ ।



## ଚତୁର୍ଥ ସନ୍ଧ୍ୟା ।

—o—

ଅମ୍ଭମାନଙ୍କ ଗ୍ରାମର ଶ୍ରୀଯୁକ୍ତ ଭଗୀରଥି ସାମନ୍ତରାୟ ସହରରେ ଅନେକ ଦିନ ହେଲା ମୋକ୍ତାରି କରନ୍ତି । ଅଜକାଲି ଧରଣର ସେ ପାଶ୍‌କରା ମୋକ୍ତାର ନୁହନ୍ତି । ସେ ଜଣେ ମରହଟ୍ଟି । ବର୍ଷେ ଦୁଇ ବର୍ଷକେ ଥରେ ଗ୍ରାମକୁ ଆସନ୍ତି । ତେବେ ପୁଣି ସହରରେ ସପରିବାର ବାସ କରିବାର ସମ୍ପୂର୍ଣ୍ଣ ବିରୋଧୀ । ଜାତିରେ ବ୍ରାହ୍ମଣ, ବଡ଼ ଧର୍ମନିଷ୍ଠ, ନିତ୍ୟ ତିନି ଘଣ୍ଟା ପୂଜାର୍ଚ୍ଚନା ନ କଲେ ଜଳ ଗ୍ରହଣ କରନ୍ତି ନାହିଁ । କିନ୍ତୁ ପରୋପକାର ଦାୟରେ ପଡ଼ିଲେ ମିଥ୍ୟା କହିବାକୁ ବା ଯୋଗାଡ଼ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଅମ୍ଭେମାନେ କହୁଁ 'ପରୋପକାରଂ ସ୍ୱର୍ଗାୟ ।' ('ପର' ଅର୍ଥ ଅପଣାକୁ ଛାଡ଼ି ଗୃହର ପରିବାର ବର୍ଗ; 'ଉପକାର' ଭରଣପୋଷଣ) ଦୁର୍ଜନମାନେ ଦୋଷାନ୍ୱେଷୀ । ସେ ଯାହାହେଉ, ସାମନ୍ତରାୟ ମହାଶୟଙ୍କର ଗ୍ରାମକୁ ଆସିବା କ୍ୱଚିତ୍ ଘଟେ । କନିଷ୍ଠା କନ୍ୟାର ବିବାହ ଉପଲକ୍ଷରେ କେତେକ ଦିନ ହେଲା, ଗ୍ରାମକୁ ଆସିଅଛନ୍ତି । ଆଜି ବିବାହ ଦିନ । ସହରର ହେତେଗୁଡ଼ାଏ ଭଦ୍ରଲୋକ ଆଜି ଗ୍ରାମକୁ କୃତାର୍ଥ କରୁଅଛନ୍ତି । ଆମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେତେକ ଯୁବକ ଲୁଟବିଦ୍ୟ ଓ ଅମ୍ଭମାନଙ୍କର ପୂର୍ବପରିଚିତ, ଆଜି ଅମ୍ଭମାନଙ୍କ ଅନୁରୋଧ ରକ୍ଷା କରିବାକୁ ୫।୬ ଜଣ ନବାଗତ ଯୁବକ ଟୁଙ୍ଗୀରେ ଉପସ୍ଥିତ । ଗ୍ରାମର ମହାଜନ ସାହୁ, ପଣ୍ଡିତ ମହାଶୟ ଆଜି ଟୁଙ୍ଗୀକୁ ଆସିଥିଲେ, କିନ୍ତୁ ପାଞ୍ଚଏ କଲିକାଳ ପିଲାଙ୍କୁ ଟୁଙ୍ଗୀରେ ଦେଖି 'ଗତି ଭଲ ନୁହେ' ସିଦ୍ଧାନ୍ତ କରି ଟୁଙ୍ଗୀ ତ୍ୟାଗ କଲେ । ମନ୍ତ୍ରରାମ ମଧ୍ୟ ଆଜି ଭୋଜନ ଲୋଭରେ ଗ୍ରାମରେ ଉପସ୍ଥିତ । ତାର ଆଜି ପ୍ରଧାନ ନେତ୍ରା ଭୋଜନ । ଦଣ୍ଡେ ପଡ଼ିଲେ ସେହି ଭୋଜନ କଥା ଆଣି ପକାଉଅଛି । ଟୁଙ୍ଗୀରେ ଯେଉଁ ଯୁବକମାନେ ସମବେତ ହୋଇଅଛନ୍ତି, ସେମାନଙ୍କ ମଧ୍ୟରୁ କାହାର

କାହାର ପରିଚୟ ଶୁଣନ୍ତୁ ।

ବାବୁ ଗୌରାଙ୍ଗ ଦାସ V. L. M. S; ସମ୍ପର୍କରେ ରାମଜୀବନଙ୍କ ଭିଣିଆର ପୁଅ—ବୟସ ୨୫।୨୬; ଦୁଇ ବର୍ଷ ହେଲା ଡାକ୍ତରୀ ପାଶ୍ କରି ସହରରେ ଗୋଟିଏ ଔଷଧାଳୟ ଖୋଲିଅଛନ୍ତି । ବିନା ଦର୍ଶନୀରେ ଅନେକ ଗରିବଙ୍କର ଉପକାର କରନ୍ତି ।

ବାବୁ ରାମହରି ମିଶ୍ର B. A.; ୪ ବର୍ଷ ହେଲା B. A. ପାଶ୍ କରି ସହରର କଲେଜରେ ଖଣ୍ଡେ ଚାକିରି ପାଇଅଛନ୍ତି । ଅର୍ଥାଭାବରୁ ଇଚ୍ଛା ସତ୍ତ୍ୱେ କୌଣସି ଉଚ୍ଚ ଆକାଂକ୍ଷା ପୂର୍ଣ୍ଣ ହେଲା ନାହିଁ । ତେବେ ଯେ ନିତାନ୍ତ ଉଚ୍ଚ ଆଶାରେ ଜଳାଞ୍ଜଳି ଦେଇଅଛନ୍ତି, ତାହା ନୁହେ । ଘରେ ବସି କେତେକ ପୁସ୍ତକ ଆଲୋଚନା କରନ୍ତି । ବୟସ ୨୮ ।

ବାବୁ କୃଷ୍ଣଚରଣ ମହାନ୍ତି—ଏ ବର୍ଷ ଏଣ୍ଟ୍ରାନ୍ସ ପାଶ୍ କରିଅଛନ୍ତି । ଡାକ୍ତରୀ ଲାଇନ୍‌ରେ ପଢ଼ିବା ତାଙ୍କର ଇଚ୍ଛା । କିନ୍ତୁ ବର୍ତ୍ତମାନ ସର୍ଭେ ସ୍କୁଲରେ ପଢ଼ୁଅଛନ୍ତି । ବେଶ୍ ବୁଦ୍ଧିମାନ୍, ବୟସ ୨୦ ।

ବାବୁ ଶ୍ୟାମଚରଣ ପଟ୍ଟନାୟକ—ମୁକ୍ତ୍ୟାରଙ୍କର ପ୍ରତିବେଶୀ । ପଣ୍ଡିତ ବିଭାଗର ତୃତୀୟ ବାର୍ଷିକ ପରୀକ୍ଷାରେ ଫେଲ ପ୍ରାଇଜ ଲାଭ କରି ମଫସଲରେ ଗୋଟିଏ ମାଇନର ବିଦ୍ୟାଳୟରେ ହେଡ୍‌ପଣ୍ଡିତ କାର୍ଯ୍ୟ କରନ୍ତି । ପ୍ରସଙ୍ଗକ୍ରମେ କହି ପକାଇଲେ ପଣ୍ଡିତବିଭାଗ ପାଶ୍ କରି, ଗୁରୁବିଭାଗ ପାଶ୍ କରି, ମାଷ୍ଟରବିଭାଗ ପାଶ୍ କରି, ତ୍ରିବଳଦଙ୍କ ପାଇଁ କୁଣ୍ଡା, ଦାନା ଓ ବିଚାଲି ଆପଣା ହାତରୁ ନ ଯୋଗାଇଲେ 'ଯୋଗ୍ୟ' ମଧ୍ୟରେ ପରିଗଣିତ ହେବାର ଆଶା ଦୁରାଶା । ବେଶ୍ ସୁସ୍ଥଚିତ୍ତ ଉନ୍ନତଚରିତ୍ର ଲୋକ, ବୟସ ୩୦ ମଧ୍ୟରେ ।

ବାବୁ ଶ୍ୟାମସୁନ୍ଦର ମିଶ୍ର—ମୁକ୍ତ୍ୟାରଙ୍କର ଜ୍ୟେଷ୍ଠ ଜାମାତା, ମୁକ୍ତିଆରେ ଏହାଙ୍କ ପିଛା ଅନେକ ଅର୍ଥ ବ୍ୟୟ କଲେ । କିନ୍ତୁ ଏ ଅନେକ ଚେଷ୍ଟା କରି ମଧ୍ୟ ଏଣ୍ଟ୍ରାନ୍ସ ଖଣ୍ଡକ ପାର୍ କରି ପାରିଲେ ନାହିଁ । ବର୍ତ୍ତମାନ କଲେକ୍ଟରୀରେ ସନାଗିରି କରନ୍ତି ।

(ପାଠକ ମହୋଦୟ କ୍ଷମା କରିବେ, 'ପ୍ରତିବଧ୍ନାତି ହି ଶ୍ରେୟଃ ପୂଜ୍ୟ-ପୂଜାବ୍ୟତିକ୍ରମଃ ।' ଏତେ ଲୋକଙ୍କର ପରିଚୟ ଦେଇ ନିଜର ପରିଚୟ ନ ଦେଲେ ପୂଜ୍ୟପୂଜାବ୍ୟତିକ୍ରମ ହେବ । ଏଣେ ପୁଣି 'ଆତ୍ମନାମ ଗୁରୋର୍ନାମ ଯନ୍ନାମ କୃପଣସ୍ୟ ଚ' ଏସବୁ ଅପ୍ରକାଶ୍ୟ—ଅର୍ଥତଃ କଚେରି ମିସଲରେ ସାକ୍ଷୀ ଜବାନବନ୍ଦି ଛଡ଼ା ଅନ୍ୟତ୍ର ଅପ୍ରକାଶ୍ୟ । ଆଜିକାଲି ସମସ୍ତରେ ଋଷିବାକ୍ୟ ଧରି ଚାଲିବା ସର୍ବଥା ଅସମ୍ଭବ, ଆପଣା ନାମ ନ କହିଲେ ପିନାଲକୋଡର ୧୭୯ ଦଫା ଧରିବ; ସେଥିପାଇଁ ଏ ସମସ୍ୟା' ଅତିକ୍ରମ କରିବାକୁ ଲୋକେ କଳ୍ପନିକାରେ ଗୋଟିଏ ନାମ ଓ ଅନ୍ୟ ଗୋଟିଏ ଛଦ୍ମନାମ ଏପରି ଦୁଇଟି ନାମ ଗ୍ରହଣ କରିଥାନ୍ତି । ଛଦ୍ମ ନାମରେ ଆପଣାର ପରିଚୟ ଦିଅନ୍ତି ଓ କଳ୍ପନିକା ନାମଟି ପ୍ରକାଶ କରନ୍ତି ନାହିଁ । ସେ ଯାହାହେଉ, ମୋର ଟିକିଏ ପରିଚୟ ଦେବି । ଯେବେ କେବଳ ଗୁଣଗୁଡ଼ିକ ବ୍ୟାଖ୍ୟା କରିବି, ତେବେ ଆପଣମାନେ କହିବେ ଅହଂକାରୀ; କେବଳ ଦୋଷଗୁଡ଼ିକ ବର୍ଣ୍ଣିବା କଲେ ଆତ୍ମନିନ୍ଦା ଯୋଗୁଁ ଈଶ୍ୱରଙ୍କ ନିକଟରେ ଦୋଷୀ । ଏପରି ସ୍ଥଳରେ ମୁଁ ବୈଜ୍ଞାନିକ ପ୍ରଣାଳୀରେ ମୋର ପରିଚୟ ଦେବି । Aristotle ଙ୍କ Golden mean ବୋଧ ହୁଏ ଆପଣମାନଙ୍କ ମଧ୍ୟରୁ ଅନେକେ ଜାଣିଅଛନ୍ତି । ମଧ୍ୟରେସ୍ତୁ ଶାଯ୍ୟଃପନ୍ଥା; କେବଳ ଦୋଷ ବା କେବଳ ଗୁଣ ବର୍ଣ୍ଣନା ନ କରି ଗୋଟିଏ ଗୁଣ ଓ ତାହା ସଙ୍ଗେ ସଙ୍ଗେ ପୂରଣକାରୀ (compensating) ଗୋଟିଏ ଦୋଷ ଏହିପରି ଦେଖାଇ ମୋର ପରିଚୟ ସାଙ୍ଗ କରିବି । ନାମଟା ଅବଶ୍ୟ ପୂର୍ବରୁ ଜାଣିଅଛନ୍ତି, ତେବେ—ଏଇ—ଶୁଣନ୍ତୁ, ଦେଖନ୍ତୁ ଓ ଭାବନ୍ତୁ)

ଶ୍ରୀ ଦୁର୍ମୁଖ ଶର୍ମା ଏଇଟି ମୋର ଛଦ୍ମ ନାମ । ପିଲାଦିନେ ସ୍ଥାନ-ଅସ୍ଥାନ ନ ବୁଝି କଥାରେ ଅନେକ ବାକ୍ୟ ବ୍ୟୟ କରୁଥିଲି ଓ ଅତ୍ୟନ୍ତ ନିନ୍ଦାପ୍ରିୟ ଥିଲି ବୋଲି ଏ ନାମକରଣ—କିନ୍ତୁ ମୋର କଳ୍ପନିକା ନାମ ନିର୍ଣ୍ଣୟ (ବୋଧହୁଏ ଆପଣମାନେ ବୁଝି ପାରୁଛନ୍ତି ଯେ ମୋର

ପ୍ରଥମ ଲକ୍ଷିତ କାମର ଦୋଷ ଦ୍ୱିତୀୟଲକ୍ଷିତ କାମର ଗୁଣରେ ଢାକି ଗଲା)

ଖାଣ୍ଟି ମାଳବନ୍ଧା ହିନ୍ଦୁ—ଯିଏ ସନ୍ଧ୍ୟାପୂଜା କର୍ମକାଣ୍ଡର ପାଖେ ଯାଏ ନାହିଁ (ଇଂରାଜୀରେ ଯାହାକୁ Orthodox Hindu କହନ୍ତି । ତାହାରେ ଯିଏ ଟିକି କାଟେ, ମାଳ ଗଡ଼ାଏ, ଯିଏ ବେଦ ଦେଖି କାର୍ଯ୍ୟରେ 'ଅଖାଣ୍ଟି'ଙ୍କୁ ବେଳେ ବେଳେ ଚିଡ଼ା ଚାଟି ଦିଏ; ଅକ୍ଷିରେ ଧୂଳ ପକାଇଲା ବେଳେ ଧୂଳଗଣ୍ଡାକ ଅକ୍ଷି ବୁଜ ମନ୍ତ୍ରର ପାରଲେ ଆଉ ଗାବକା କଣ ?)

ପରୋପକାରରତ—ଯିଏ ନିଜର ତହବିଲ ହେଲେ, ଯେଉଁ ଯେଉଁ ଉପକାର କରିଥାଏ, ତାହାର ଦ୍ୱାହି ଦେଇ ବୟସଙ୍କୁ ପରାସ୍ତ କରେ ଓ ନିଜକୃତ ଉପକାର ସମସ୍ତଙ୍କୁ କହି ବୁଲେ ।

ଯୁବକ; ବୟସ ୩୦—ଯିଏ ହେତୁତ ଅନିବାର୍ଯ୍ୟ କାରଣରୁ (କେତେଟା ଅବଶ୍ୟ ଆପଣ ଅନୁଭବରୁ ଶିଖି ଅଛନ୍ତି ବା ଦେଖିଥିଛନ୍ତି ) ମସ୍ତକର ଅର୍ଦ୍ଧେକ କେଶ ସେମାନଙ୍କ ଯୁବାସୁଲଭ କୃଷ୍ଣବର୍ଣ୍ଣରୁ ୬୦ ବର୍ଷ ବୁଢ଼ାଙ୍କ ଭଳି ଗଲେଣି ।

ନ୍ୟାୟ୍ୟ ଅନ୍ୟାୟ୍ୟ ଉତ୍ତମରୂପେ ବୁଝିପାରେ—ଯିଏ ଉପରସ୍ଥ ଲୋକଙ୍କ ମନ ଜଗି କାର୍ଯ୍ୟ କରିବାକୁ ବାଧ୍ୟ ହୁଏ, ବର୍ଷା ଦେଖି ଛତା ଧରେ । (ତା ନ ହେଲେ ଯେ ଦେହ ଓଦା ହୋଇଯିବ ! ଯେ ଛତାଧରି ନାହିଁ ତାହା ନିମନ୍ତେ ଛତାର ସୃଷ୍ଟି ; ଯେ ଛତା ଧରି ନ ଜାଣେ ତା ନିମନ୍ତେ ପକ୍ଷୀଙ୍କ 'କମ୍ପ ଟୋପର)

ପରର ଦୁଃଖ ଦେଖିଲେ ଜାଣେ—କିନ୍ତୁ ତାଙ୍କୁ ଦୁଃଖରୁ ଉଦ୍ଧାର କରିବାକୁ ଚେଷ୍ଟା କରେ ନାହିଁ, କାରଣ ଈଶ୍ୱର ତାଙ୍କୁ ଦୁଃଖ ଦେଉଅଛନ୍ତି, ସେ ଦୁଃଖ ମୋଚନ କଲେ ଈଶ୍ୱରଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ ହେବ ବୋଲି ମୋର ଧାରଣା ।

କୃତବିଦ୍ୟ—କିନ୍ତୁ 'ଯଥା ଖରଶ୍ଚନ୍ଦନଭାରବାହୀ ଭାରସ୍ୟ ବେତ୍ତା ନହି ଚନ୍ଦନସ୍ୟ ।' ସବୁଦିନେ ବାଡ଼ ବାଇଗଣ ଘୋଷି ବାଇଗଣରେ ପ୍ରଭେଦ ରଖିଥାଏ । ବହି ଧରି ସଂସାରରେ ଚଳିଲେ ଚଳି ହେବ ନାହିଁ, ଏହା ସିଦ୍ଧାନ୍ତ କରିଅଛୁ । ( ପ୍ରଥମେ କିନ୍ତୁ ପଢ଼ା ଛାଡ଼ି ପୁସ୍ତକ-ନିର୍ଦ୍ଦିଷ୍ଟ ଆଦର୍ଶ ଖୋଜି କରିଲି । ଫଳରେ ଯାହା ଦେଖିଲି, ସ୍ଥିର କଲି ଏତେ ଏତେ ବଡ଼ଲୋକ ଚଳି ଯାଉଛନ୍ତି, ମୁଁ ଅଚଳ ରହିଯିବି ?)

ମାଦକସେବନର ନିତାନ୍ତ ବିରୋଧୀ—କିନ୍ତୁ ବେନାପୁ ମୋଦକ-(ମିଷ୍ଟାନ୍ନ) ପ୍ରିୟ ।

ଗାର୍ହସ୍ଥ୍ୟଜୀବନର ଉଚ୍ଚ ଆଦର୍ଶମାନ ପାଠ କରି ଦେହ ପୁଲକିତ ହୁଏ—କିନ୍ତୁ ଘରେ ସବୁଦିନେ କଳି; ସ୍ତ୍ରୀ ମୋର ରୁଦ୍ରପ୍ରକୃତି ହେତୁ ଘରେ ସମସ୍ତେ ବିରକ୍ତ ।

ଇତ୍ୟାଦି—(ବିୟୁକ୍ତ) ଇତ୍ୟାଦି=(ସମାନ) ୦

(ଏତିକି ପରିଚୟରୁ ମୋର ଛଅ ଚୈତନିକ ଜ୍ଞାନ ଇତ୍ୟାଦି ବୁଝି ପାରିବେ । ଆପଣମାନେ ବିଚାରୁଥିବେ ଲୋକଟା ଏକ ପ୍ରକାର ନୈରାଶ୍ୟଜନକ; କିନ୍ତୁ ମୋର ଭାଗ ଭଲ ବଳିଆ ଜଗର ଅଛି; ମୋ ପକ୍ଷ ସମର୍ଥନ କରିବାକୁ ଅନେକ ଉପାୟବୁଦ୍ଧିତ ଓସ୍ତାଦ୍ ବସନ୍ତମାନ । ଅତଏବ ମୋ ସ୍ତ୍ରୀରେଁ ଯାହା ଅପବାଦ ମୂଳଟା ଛାଡ଼ି ଦେବେ ବୋଲି କହିଥିଲେ, ତାହା କିନ୍ତୁ ଆପଣଙ୍କ ସ୍ମରଣେ ମନେ ରହିଲା ।)

ଅସ୍ମାକଂ ଏହି ୬ ଜଣ ହିଁ ମସ୍ତକମ୍ ଆଜ ଟୁଙ୍ଗୀର ଅଧିବାସୀ ।

ସମସ୍ତେ ବିଭାଘରର ଧୂମ୍‌ଧାମ୍ ଯୋଗୁଁ ଅସ୍ଥିର । ଆଜ କେବଳ ଆମେ ଗଳ୍ପରେ କାଳ କାଟିଲୁଁ ।

ଆଗନ୍ତୁକମାନେ ପ୍ରଥମେ ଏ ଗ୍ରାମର ସମସ୍ତ ସମାଚାର ଠିକ୍ ଠିକ୍ ଶୁଣିଲେ । ଭାଗବତ ଘରଟି ଜୀର୍ଣ୍ଣାବସ୍ଥା ପ୍ରାପ୍ତ ହୋଇ ଥିବାରୁ ଗଦାଧର ବାବୁ ପ୍ରସ୍ତାବ କଲେ, ଏ ଘରଟିର ସଂସ୍କାର ନିମନ୍ତେ ଗୋଟିଏ ଚାନ୍ଦା ଆଦାୟ କର ।

ବାବୁ ଶ୍ୟାମଚରଣ ପଟ୍ଟନାୟକ ଆପଣା ପକେଟରୁ ଖଣ୍ଡେ କାଗଜ ଓ ପେନ୍‌ସିଲ୍ ବାହାର କରି ଦେଲେ ଓ ଟୁଙ୍ଗୀରେ ଉପସ୍ଥିତ ବ୍ୟକ୍ତିମାନଙ୍କଠାରୁ ପ୍ରଥମେ ଚାନ୍ଦା ସ୍ୱାକ୍ଷରର ଯୋଗାଡ଼ ହେଲା । ପ୍ରଥମେ ଆମ୍ଭେମାନେ ଗଦାଧର ବାବୁଙ୍କୁ ସେ କାଗଜ ଖଣ୍ଡକ ଦେଲୁଁ । ଗଦାଧର ବାବୁ ଆପଣା ନାମ 'ଗଦାଧର ମିଶ୍ର' ଲେଖି ସ୍ୱୀକୃତ ଅର୍ଥର ପରିମାଣ ଲେଖିଦେଲେ ଓ ଗୌରାଙ୍ଗ ବାବୁଙ୍କ ଆଡ଼କୁ ସେ କାଗଜ ଖଣ୍ଡକ ବଢ଼ାଇ ଦେଲେ । ଗୌରାଙ୍ଗ ବାବୁ ସେ କାଗଜ ଦେଖି ଗଦାଧର ବାବୁଙ୍କ ସମ୍ବୋଧନ କରି କହିଲେ, 'ମହାଶୟ, ଆପଣଙ୍କ ନାମ ପୂର୍ବରେ 'ଶ୍ରୀ' ବ୍ୟବହାର ନ କରିବା କି ଯୁକ୍ତିସଙ୍ଗତ ?' ଗଦାଧର ବାବୁ ଶାନ୍ତ ଭାବରେ ଉତ୍ତର କଲେ, 'କୌଣସି ବିଷୟରେ ଅନ୍ୟକୁ ପ୍ରଶ୍ନ କରିବା ଯୁକ୍ତିଯୁକ୍ତ ହୋଇ ନ ପାରେ, କିନ୍ତୁ ନିଜର ମତ ଅନୁସାରେ କାର୍ଯ୍ୟ କରିବା ତ ଯୁକ୍ତିଯୁକ୍ତ; ଏପରି ପ୍ରଶ୍ନ ଆପଣ କଲେ କାହିଁକି ? 'ଶ୍ରୀ' ଗୋଟିଏ ସମ୍ମାନସୂଚକ ଶବ୍ଦ ଓ ନାମ ପୂର୍ବରେ ଶ୍ରୀ ଶବ୍ଦ ପ୍ରୟୋଗ କରିବା ଭଦ୍ରତାନୁମୋଦିତ । ତାହା ବୋଲି ମୋ ମତରେ ନିଜର ନାମ ପୂର୍ବରେ 'ଶ୍ରୀ' ଲେଖିବା ଉଚିତ ନୁହେ । ଇଂରାଜୀରେ Mr. (ମିଷ୍ଟର୍) ବା Esquire (ଏସ୍କ୍ୱାୟର) ଯେପରି ସମ୍ମାନସୂଚନାରେ ପ୍ରଯୁକ୍ତ ହୁଏ, ମୋ ମତରେ ଦେଶୀୟ ଭାଷାରେ 'ଶ୍ରୀ'ର ସେହି ସ୍ଥାନ । ଅନ୍ୟ ଜଣେ ମୋ ନାମ ଲେଖିଲେ Mr. କିମ୍ବା Esq. କିମ୍ବା ଶ୍ରୀ ଲେଖିବାର ଉଚିତ । କିନ୍ତୁ ନିଜେ ନିଜର ନାମରେ ଏପରି ଶବ୍ଦ ଲଗାଇଲେ ମତେ ଅନୁଚିତ ବୋଧ ହୁଏ ।

ଶ୍ୟାମଚରଣ ବାବୁ କହିଲେ, 'ଘନହର ବାବୁ, ତାହା ନୁହେଁ, ଶ୍ରୀ ଅର୍ଥ ଲକ୍ଷ୍ମୀ । ପ୍ରଥମେ କୌଣସି ମଙ୍ଗଳାଚରଣ କରି କୌଣସି କଥା ଲେଖିବା ର ଚଳିବା ଆମ୍ଭମାନଙ୍କ ଦେଶରେ ଚଳି ଆସୁଅଛି । ଏଥିର ଉଦାହରଣ ପ୍ରାୟ ସମସ୍ତ ସଂସ୍କୃତ ପୁସ୍ତକମାନଙ୍କରେ ମିଳେ । ନାମ ପୂର୍ବରେ 'ଶ୍ରୀ' ଲେଖିବା ଅର୍ଥ ମଙ୍ଗଳାଚରଣ ।'

ଘନହର ବାବୁ ଈଷତ୍ ହାସ୍ୟ କରି କହିଲେ, 'ପୁସ୍ତକ ବା କାର୍ଯ୍ୟର ଆରମ୍ଭରେ ମଙ୍ଗଳାଚରଣ ତ ବେଶ୍ କଥା । କିନ୍ତୁ ନାମ ପୂର୍ବରେ 'ଶ୍ରୀ'ର ଆପଣ ଏପରି ଏକ ଆଧ୍ୟାତ୍ମିକ ଅର୍ଥ ବାହାର କଲେ, ମୁଁ ବଡ଼ ଆନନ୍ଦିତ ହେଲି । ବିଚାର କରି ଦେଖିବା ଯେ ଆପଣଙ୍କ ଯୁକ୍ତି ଗ୍ରାହ୍ୟ କି ନା ?'

ଶ୍ୟାମଚରଣମହାନ୍ତ କହିଲେ, ବୋଧହୁଏ ମଙ୍ଗଳାଚରଣ ଉଦ୍ଦେଶ୍ୟରେ କେତେକ ଜମିଦାର ଓ ଭଦ୍ରଲୋକମାନେ ଆପଣା ଆପଣା ନାମରେ ପୂର୍ବ ଏକ ଥର 'ଶ୍ରୀ' ଲଗାନ୍ତି ଓ ଜଗନ୍ନାଥ ମହାପ୍ରଭୁଙ୍କ ନାମ ପୂର୍ବରେ ମଧ୍ୟ 'ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀ ଚରଣେ ଶରଣ' ଏପରି ଲେଖନ୍ତି ।

ଘନହର ବାବୁ କହିଲେ, 'ଏପରି [illegible] ମାତ୍ର ମଧ୍ୟ' [illegible] ବିଶେଷଭାବରେ [illegible], [illegible], [illegible] ଶ୍ରୀ, ଶ୍ରୀଯୁକ୍ତ, ଶ୍ରୀମାନ୍, ଶ୍ରୀଲ ଶ୍ରୀଯୁକ୍ତ, ଏ ସମସ୍ତ ସମ୍ମାନ-ସୂଚକ ପଦ । [illegible] ଏ ସବୁ ନ ଲେଖିଲେ ଚଳେ [illegible] ବିଶେଷରେ ଏ ବିଷୟରେ ମତଭେଦ [illegible] କାର୍ଯ୍ୟ [illegible] ହେବ, ଏପରି ବୋଧ ହେଉ ନାହିଁ । ଅନ୍ୟ ଲୋକେ [illegible] ନାମ ଲେଖି ତା ପୂର୍ବରେ ଶ୍ରୀ ଲେଖିଦେଲେ କହିବେ କିଛି ଆପତ୍ତି ନାହିଁ । କିନ୍ତୁ ନିଜର [illegible] ଯେପରି [illegible] ଦେଖା, ସେଥିରେ [illegible] ନାହିଁ । ନିଜର [illegible] ଅର୍ଥ ଏହି ଯେ ଅବଶ୍ୟକ [illegible] ଛାଡ଼ି ପାରିବ । ଯେ [illegible] ଲେଖୁ, ସେଥିରେ ଆପତ୍ତି କଣ ?

ମୁକ୍ତ୍ୟାରଙ୍କ ଜାମାଇଁ ଶ୍ୟାମସୁନ୍ଦର ମିଶ୍ରେ କହିଲେ ଯେ ଯେବେ ଶ୍ରୀ ମଙ୍ଗଳାଚରଣ ଅର୍ଥରେ ଲେଖା ଯାଉଥାନ୍ତା, ତେବେ ପୁରୁଷମାନଙ୍କ ନିମନ୍ତେ ଏକ ପ୍ରକାର ମଙ୍ଗଳାଚରଣ ସ୍ତ୍ରୀମାନଙ୍କ ନିମନ୍ତେ ଅନ୍ୟ ପ୍ରକାର ମଙ୍ଗଳାଚରଣ କାହିଁକି ହୁଅନ୍ତା ? ପୁରୁଷମାନଙ୍କ ବେଳେ ଶ୍ରୀ ଅମୁକ ଓ ସ୍ତ୍ରୀମାନଙ୍କ ବେଳେ ଶ୍ରୀମତ୍ୟା ଅମୁକେଇ ଦେବ୍ୟା' ଏପରି କାହିଁକି ଲେଖା ଯାନ୍ତା ?

ଶ୍ୟାମଚରଣ କହିଲେ—ଅରେ ତୁମ ବଡ଼ରେଇଅ ଭାଷାରେ ଯିନା ଲେଖାଯାଏ 'ଶ୍ରୀମତ୍ୟା—ଦେବ୍ୟା' କିନ୍ତୁ ପ୍ରକୃତରେ 'ଶ୍ରୀମତୀ—ଦେବୀ'; ଦେବ୍ୟାଃ ଅର୍ଥ ଦେବୀଙ୍କର । 'ଅମୁକ ଦେବୀଙ୍କର ଏହି ନିବେଦନ' ଏପରି ଭାବରେ ସଂସ୍କୃତ ପତ୍ରମାନଙ୍କରେ ଦେବ୍ୟାଃ ଲେଖାଯିବାର ବିଧି ଥିଲା, କିନ୍ତୁ ବର୍ତ୍ତମାନ ପ୍ରକୃତ ଭାବ ଗଲାଣି । ଅସ୍ତ୍ରିତଙ୍କାଳଯୁକ୍ତ ଶବ୍ଦଟି ମାତ୍ର ରହି ଯାଇଅଛି ।

ମନ୍ତ୍ରଘର ଅଳ ପରିପୂର୍ଣ୍ଣ ଝିଂଝିଠା ହୋଇକ ଗରଦ ଗୋଳ ଆନନ୍ଦରେ ମାତ ଯାଉଛି । 'ଶ୍ରୀମତୀ' ଶବ୍ଦ ଶୁଣି 'ପାଚପଟ ଗପଟ ଖୀର ନଦୀ ଶ୍ରୀମନ୍ତୀ ଜିଭାଇଲେ ଦେ' ଚତୁଷ୍ପାଠି ସର୍ବପାଳ ଚଢ଼ାଇ ଦିଗୋଳ ତଳ ଓ ଗୋଟିଏ ଶ୍ଲୋକ ବୋଲି ଉଠିଲେ; କହିଲେ, ଖାଲି ଯିବା ପଣ୍ଡିତଙ୍କ ଉଦ୍ୟମ ଦେଖିବା:—

'ପଣ୍ଡା ପିଣ୍ଡା ତଳକୁ ବସିଲେ ମଣ୍ଡପେ ଶାସନ ଏ
ଟଣ୍ଡା ତଣ୍ଡା ବହି ବସି ଗଲେ ତେଣ୍ଡରେ ପାଡ଼ୀ ଥାନ୍ତ ।
ମଣ୍ଡା ଗଣ୍ଡା ଲଡ଼ୁ ବଡ଼ସରେ ଖଣ୍ଡପାକେ ସଜାଡ଼ି
ଭେଣ୍ଡା ଭେଣ୍ଡା ଦ୍ୱିଜ ଧରସିଲେ ପୂର୍ଣ୍ଣପାତ୍ରେ ଅକାନ୍ତ ।

ସେତେବେଳେ ହୃଦୟରଙ୍କ ଇଚ୍ଛାରୁ ଛଣକ ପାଇଁ ନିମନ୍ତ୍ରଣ ବୋଇଜଲା ଓ ଏହି ସମୟରେ ଗ୍ରାମର ବୈଦ୍ୟ 'ଅର୍ଦ୍ଧ ସତପନ୍ତ୍ରିଏ' ଅଣି ଠୁଙ୍ଗୀରେ ଯୋଗ ଦେଲେ । ବୈଦ୍ୟରାଜ ଶବ୍ଦ ଦର ଦନ୍ତକ୍ଷ ପେ ଦାନ୍ତ ଦରରେ ଯେତେ ବୈଦ୍ୟଶାସ୍ତ୍ର ଅଛି, ଏତେ ଗୋଷ୍ଠି ଏ ଅଞ୍ଚଳରେ ନାହିଁ ।

ଅନ୍ୟମାନେ ଯେତେ ଦୂର ବୁଝିଅଛୁଁ, ବୈଦ୍ୟଗଣ ସେ ପୋଥିର ତେତେ ଧାରନ୍ତି ନାହିଁ । କେବଳ କେତେଗୁଡ଼ାଏ ଶ୍ଳୋକ ମୁଖସ୍ଥ କରିଅଛନ୍ତି । ବୈଦ୍ୟଗଣେ ସେ ଶ୍ଳୋକମାନ ଯେପରି ଅର୍ଥ କରନ୍ତି, ତାହା ବୁଝିବାକୁ ମଲ୍ଲିନାଥ ଦଶାନ୍ଦୁକତେ ପୁନର୍ବାର ଅର୍ଥଶାସ୍ତ୍ର ଶିକ୍ଷା କରନ୍ତେ । ପ୍ରମାଣ-ଅଠରୁଣ୍ଡ ଦ୍ରବ୍ୟପଦାରରେ ବର୍ଣ୍ଣିତ ଗୋପି କବିଗଣେ ତାହାରେ ତନ୍ତ୍ର । ତନ୍ତ୍ର 'ସତପଞ୍ଚିଏ' ବ୍ରାହ୍ମଣ । ବୈଦ୍ୟଗଣେ ଯେଉଁ ଔଷଧ ପ୍ରସ୍ତୁତ କରନ୍ତି, ସେ ଔଷଧର ଉପକରଣମାନ ସର୍ବସାଧାରଣରେ ପ୍ରକାଶ କରିବାକୁ ନାରାନ୍ତି ନାରାଜ । ଯେବେ କେହି ନିତାନ୍ତ ଜିଗର କଲେ, ତେବେ ବୈଦ୍ୟଙ୍କ 'ନବ ଗୋପ୍ୟାନ ଧାରଦ୍ୱେହ' ଦ୍ୱାହି ଦଅନ୍ତି । ଉପର ଡାକ୍ତର ବାବୁଙ୍କୁ ପରାସ୍ତ କରିବେ, ଏହି ଦଳ ନେତାଁ କେବଳ ସେହି ସୁଯୋଗ ଖୋଜି ବୁଲୁଛନ୍ତି । ଡାକ୍ତର ବାବୁ ୨ । ୩ ଦିନ ହେଲା ୫।୭ ଜଣ ଲୋକଙ୍କୁ ଆରୋଗ୍ୟ କରି ଅଛନ୍ତି । ଏଣ୍ଡାଦ୍ୱାରା ବୈଦ୍ୟଗଣଙ୍କ ପସାର ଯିବ । ସେଥି ପାଇଁ ସବୁ କେତେ କହନ୍ତି 'ଉତ୍ତାପ ନ ଥିଲେ ଯାତ୍ରାକାଳି ଙ୍ଗୋଛି ।' ପୂର୍ବରେ ବୈଦ୍ୟଗଣେ କହୁଥିଲେ 'ମନ୍ତ୍ର-ମଣ୍ଡଳେ ନାହିଁ ଏମନ୍ତ ଜନ, ମୋ ଅଧିକାର ନେଟିରେ ହରିବ ଧନ ।' ତନ୍ତ୍ର ଡାକ୍ତର ଆସି ତାଙ୍କର ପ୍ରତିଦ୍ୱନ୍ଦୀ ହେଲେ, ଏହା ନିନଗଣ୍ଡ ଅସହ୍ୟନୀୟ ହୋଇ ଉଠିଲା । ଡାକ୍ତର ବାବୁ, ରାମହରି ବାବୁ ଓ ମୁଁ ବୈଦ୍ୟଙ୍କ ଅଭିପ୍ରାୟ ଉତ୍ତମରୂପେ ବୁଝି ପାରିଥିଲୁଁ । ସେ ପ୍ରଥମେ ଆସି ଡାକ୍ତରୀ ଚିକିତ୍ସାର ଅଯଥା ନିନ୍ଦା ଓ ସ୍ୱୀୟ ଚିକିତ୍ସାପଦ୍ଧତିର ପ୍ରଶଂସା କରି କହିବେ ଶ୍ଳୋକ ବୋଲିଲେ । ପ୍ରଥମ ଶ୍ଳୋକଟି ଶୁଣନ୍ତୁ:—

ମନ୍ତ୍ରାଦପି ଶସ୍ତ୍ର ମନୁଷ୍ୟ ଦେହରେ ନାନାଦି ରୋଗେ କରୁଥାନ୍ତି ବାଧଃ
କାଡ଼ନ୍ତି ଯେବେ କଫବାତପିତ୍ତେ ନାନାଦି ରୋଗଙ୍କୁ ହୁଅନ୍ତି ଖଣ୍ଡୀ ।

ପରଙ୍କୁ ମନ୍ତ୍ରଗମ୍ଭୀର ଭାବ କରି ବୈଦ୍ୟଗଣଙ୍କ ଉପରେ ଚର୍ଚ୍ଚନ-ବର୍ଜନ କରି ଡାକ୍ତରଙ୍କ ପକ୍ଷରେ କହିଲା । (ମନ୍ତ୍ରଗମ୍ଭୀର ବୃତ୍ତିର 'ଅମାବାଡ଼ି,' ବୈଦ୍ୟଙ୍କୁ ଦେଖି ଅନୁସରଣ କଲା । ବୈଦ୍ୟମାନ

ଯେଉଁ ଚୂର୍ଣ୍ଣିକ ଦେଲେ ତହିଁରେ କିଛି ଉପକାର ହେଲା ନାହିଁ । ଶେଷ ଦଶ ହେଲା ଡାକ୍ତରଙ୍କ ଅନୁସରଣ କରିବାରୁ ଡାକ୍ତର ପ୍ରାତେ Seidlitz powder ଓ ୩ ଦାନ Essence Anisi ଦେବାରୁ ମନ୍ତ୍ରୀମ୍ ଖୁବ୍ ଆରାମରେ ଅଛି । ଏଥି ଯୋଗୁଁ ବୈଦ୍ୟରାଜଙ୍କ ଉପରେ ବଡ଼ ଖପା ଓ ଡାକ୍ତର ବାବୁଙ୍କଠାରେ ଭାରି ପ୍ରସନ୍ନ ।)

“ବୈଦ୍ୟ, କାହା ସାଙ୍ଗରେ କାହାକୁ ତୁଳୁଛ ? ଗଧଟା ଏ, ଘୋଡ଼ାଟା ଏ ! ଅର୍ଦ୍ଧ ସନ୍ଧପନ୍ତି ବୈଦ, ଆଉ ଗୋଟାଏ ବାବୁ ଡାକ୍ତର ! ତୁମର ଗୋଟେସବୁ ନାହିଁ । କିଛି କଥାରେ ପୁଚେ ପଡ଼ିଲେ ବୈଦ ଯାଇ ଘରେ ପୋଥି ପିଟେଇବ । ଡାକ୍ତର ଯାଇ ତାଙ୍କ ଉପର ଡାକ୍ତରଙ୍କୁ ପଚାରିବେ । ନହେଲେ ସାହେବଙ୍କୁ ପଚାରିବେ । କିଛି ବେମାର ହେଲେ ତୁମେ ବଣାଏ ଔଷଧ ଗିଳେଇବ । ଡାକ୍ତର ଟୋପାଏ ଅରକ ଦେଲେ ସବୁ ଠିକ୍ ଠାକ୍ । ବଥଟିଏ ହେଲେ ତୁମେ ମାଢ଼େ ଲେଖାଏଁ ଔଷଧ ବାଟି ପନ୍ଦର ଦିନେ ବଥକୁ ପଚେଇବ । ଡାକ୍ତର ସେହିକ୍ଷଣି ଖାଲି ଦେଇ ଔଷଧ ପଟି ଲଗେଇ ଦେବେ, ଉପର ଓଳ ଆରାମ । ତୁମେ ସବୁ ମିଛ ନାଡ଼ି ଟିପି ଦେଇ ଅକ୍ଷି ବୁଜି ରୋଗୀମାନଙ୍କୁ ଗିରପଦ୍ଧର ପଢ଼େଇ ମୁଣ୍ଡ ପିଟେଇ ବସିବ । ଡାକ୍ତର ବିନା ସବୁ ଲକ୍ଷଣ ନ ଦେଖିଲେ ମନକୁ ଔଷଧ ଦେବେ ନାହିଁ ।”

ଆମ୍ଭେମାନେ ମନ୍ତ୍ରୀମର କଥା ଶୁଣି ହସିଲୁଁ । ବୈଦ୍ୟରାଜ ମନ୍ତ୍ରୀମଙ୍କୁ ଗୁଡ଼ାଏ ବକ ଦେଇ ଗଲେ ଓ ‘ଆଚ୍ଛା, ପରଖାପରଖି ହବ’ ବୋଲି ଡାକ୍ତର ବାବୁଙ୍କୁ ଧମକ ଦେଇ ଦୁଆରୀରୁ ବାହାରି ଗଲେ ।

ରାମଦର ବାବୁ କହିଲେ—ଆହା ! ଚରକ ସୁଶ୍ରୁତର ପିଲାଙ୍କୁ ଏହି ଦଶା ହେଲା ! ଆମ ଦେଶରେ ଅଧିକାଂଶ ‘ବୈଦ୍ୟବନ’ ଆଖ୍ୟାଧାରୀ ଲୋକ ସରୂପଥିଙ୍କ ଶ୍ରେଣୀର, ଚିକିତ୍ସା ଶାସ୍ତ୍ରର ଧାର ଧାରବେ ନାହିଁ । ବାପ ‘ଅଜା ଯାହା କାନ୍ଥରେ ଲେଖି ଦେଇ ଯାଇଅଛନ୍ତି, ସେହି ‘ଚୂର୍ଣ୍ଣିକ’ ‘ବଟିକା’ ‘ପାଚନ’ ଓ ‘ମୋଦକ’ ଛଡ଼ା ଅନ୍ୟ କିଛି କଥା

ଜଣା ନାହିଁ । ସବୁ ରୋଗକୁ ଏକ 'ପାଚନ' ବା 'ଚୂର୍ଣ୍ଣ' ! ମନ୍ତ୍ର ଭଲ ହେଲେ କେତେ ନ ହେଲେ କେତେ ! ଔଷଧ ଖର୍ଚ୍ଚ ବୋଲି ଯାହା କିଛି ଉତ୍ପନ୍ନ ନେଇ ଆପଣା କାର୍ଯ୍ୟ କଲେ ହେଲା । ଆମ୍ଭମାନଙ୍କ ଦେଶର ଅଧିକାଂଶ ବୈଦ୍ୟ ଅନେକ ଚେର ମୂଳ ଚାଳିଅଛନ୍ତି ଦ ନାହିଁ ସନ୍ଦେହ । ୟୁରୋପୀୟମାନେ ଧାରାବାହିକ ଅନୁଶୀଳନ କରି ଚିକିତ୍ସା ଶାସ୍ତ୍ରର କେତେ ଉନ୍ନତି କରିଅଛନ୍ତି । ପୁରାତନ ଚିକିତ୍ସା ଶାସ୍ତ୍ରର ଚର୍ଚ୍ଚା ନିମନ୍ତେ ଯେବେ ବିଦ୍ୟାଳୟମାନ ସ୍ଥାପିତ ହୁଅନ୍ତା, ତେବେ ଆୟୁର୍ବେଦର କେତେ ଉନ୍ନତି ହୁଅନ୍ତା ! ରାଜା ଅନୁଗତ ଧର୍ମ, ଯଦି ଆମ୍ଭମାନଙ୍କ ଦେଶୀୟ ଶାସନକର୍ତ୍ତାମାନେ ଆୟୁର୍ବେଦକୁ ଟିକିଏ ଆଡ଼ ଆଖିରେ ଦେଖନ୍ତେ ତେବେ କଷ୍ଟରୁ ଆୟୁର୍ବେଦରି ଟେକ ବଜାୟ ରହନ୍ତା । ଦେଶବିଦେଶରେ ଯେପରି ଡାକ୍ତରୀ ଶିକ୍ଷା ଦିଆ ଯାଉଅଛି, ଯେବେ ସେହିପରି ଆୟୁର୍ବେଦ ବିଦ୍ୟାଳୟମାନ ସ୍ଥାପିତ ହୁଅନ୍ତା, ତେବେ ଆୟୁର୍ବେଦର ମହିମା ସମ୍ପୂର୍ଣ୍ଣ ପ୍ରକାଶିତ ହୁଅନ୍ତା । Pathology (ନିଦାନ), Surgery (ଅସ୍ତ୍ରଚାଳନ), Midwifery (ଧାତ୍ରୀବିଦ୍ୟା) ସମସ୍ତ ଆମ୍ଭମାନଙ୍କ ଦେଶରେ ଥିଲା । କିନ୍ତୁ ଉପଯୁକ୍ତ ଚର୍ଚ୍ଚା ଅଭାବରୁ ସେ ସମସ୍ତ ଅନ୍ଧ ଯୁଗରେ ଲୋପ ହୋଇ ଗଲାଣି । କି ଦୁର୍ଭାଗ୍ୟ ! ଆଉ ମଧ୍ୟ ଯେତେ ଦିନଯାଏ ଚିକିତ୍ସା ବିଷୟରେ ପାଶ୍ଚାତ୍ୟ ପଦ୍ଧତି ସଙ୍ଗେ ପ୍ରାଚ୍ୟ ପଦ୍ଧତିର ସମ୍ବନ୍ଧ ନ ଘଟିବ, ସେତେଦିନଯାଏ ଭାରତବର୍ଷରେ ଚିକିତ୍ସା ବିଦ୍ୟା ବିଶେଷ କିଛି ଉନ୍ନତି କରିବ, ଏହା ମୋର ଧାରଣା ହେଉ ନାହିଁ ।

ଅନନ୍ତର ବିଷୟ ଯେ ଗୌରାଙ୍ଗ ବାବୁ ଏ ବିଷୟରେ ଉଲେମାଣ ଦୁଃଖିତ ନ ହୋଇ କହିଲେ—ମୁଁ ନିଜେ ଅନେକ ସ୍ଥଳରେ ମୋ ଅନୁଭବରୁ ବୁଝି ପାରିଅଛି ଯେ କୌଣସି କୌଣସି ରୋଗୀ ଡାକ୍ତରୀ ଔଷଧ ପ୍ରୟୋଗରେ ଆରୋଗ୍ୟ ଲାଭ ନ କରି ଶେଷକୁ କବିରାଜୀ ଔଷଧରେ ଉପକାର ପାଇଅଛନ୍ତି । ଅଶିକ୍ଷିତ ଲୋକମାନଙ୍କ ହାତରେ ବୈଦ୍ୟଶାସ୍ତ୍ରମାନ ପଡ଼ିବାରୁ ଆୟୁର୍ବେଦର ଏତେ ନିରାଦର !

ଶ୍ୟାମଚରଣ ପଟ୍ଟନାୟକ କହିଲେ—ଏ ଦେଶର ଜଳବାୟୁ, ଲୋକଙ୍କ ଶାରୀରିକ ଅବସ୍ଥା ଇତ୍ୟାଦି ସମ୍ୟକ୍ ବିଚାର କରି ପୂର୍ବକାଳର ଋଷିମାନେ ଆୟୁର୍ବେଦୀୟ ଔଷଧମାନଙ୍କର ବ୍ୟବସ୍ଥା କରି ଯାଇଅଛନ୍ତି । ଇଯୁରୋପୀୟମାନଙ୍କ ଆବିଷ୍କୃତ ଔଷଧମାନ ସେମାନଙ୍କ ଦେଶରେ ବିଶେଷ ଫଳ ଦେଖାଇ ପାରେ । ଆମ୍ଭମାନଙ୍କ ଦେଶୀୟ ଔଷଧ ଆମ୍ଭମାନଙ୍କ ପକ୍ଷରେ ଯେପରି ହିତକର, ବିଦେଶୀୟ ଔଷଧ କଦାପି ସେ ଫଳ ଦେଖାଇ ପାରନ୍ତା ନାହିଁ । କେବଳ ଆୟୁର୍ବେଦଚର୍ଚ୍ଚା ଲୁପ୍ତ ହେବାରୁ ବାଧ ହୋଇ ଲୋକେ ଡାକ୍ତରୀ ଔଷଧର ଆଶ୍ରୟ ନଅନ୍ତି ।

ମନ୍ତ୍ରୀରାମ୍ ଭୋଜନ ଚିନ୍ତାରେ ନିତାନ୍ତ ଅସ୍ଥିର; କହିଲା—'ପାପ ବାବୁ ବାବୁ କପାଳ ବରଖାସ୍ତ ! ଆମେ ଯାଉଁ ଯାଉଁ ସମସ୍ତେ ଖାଇ ସାରିବେ । ଆମେ ଆଜି ଉପାସ ରହିବା । ସମସ୍ତେ ଉଠ, ନୋହିଲେ ମୁଁ ବାହାରିଲି ! ଏଥିରେ ମୂଲକର ଉପକାର କଥା ବାଚ୍ଚୁ ବାଚ୍ଚୁ ଗଢ଼ରେ ଉପାସ ଯୋଗ ହେଲେ ବାବୁମାନଙ୍କ ବଦନରେ ବଳେ ଚୂନି ଧରିଯିବ ଯେ ।

ଏହି ସମୟରେ ସାମନ୍ତରାୟଙ୍କ ଘରୁ ମନୁଷ୍ୟ ଆସି ଆମ୍ଭମାନଙ୍କୁ 'ଆଶୀର୍ବାଦ ସଭା'କୁ ଡାକିଲା । ବ୍ରାହ୍ମଣମାନଙ୍କ ବିବାହ ବ୍ରତ ଇତ୍ୟାଦିରେ 'ଆଶୀର୍ବାଦସଭା' କିପରି ହୁଏ, ତାହା ଦେଖିବାକୁ ଶ୍ୟାମଚରଣ ବାବୁ ଓ ଲକ୍ଷ୍ମୀଚରଣ ମହାନ୍ତି ଆଗ୍ରହ ପ୍ରକାଶ କଲାରୁ ସେମାନଙ୍କୁ ସଙ୍ଗରେ ନେଇ ଆମ୍ଭେମାନେ ଟଙ୍ଗୀରୁ ବାହାରିଲୁ ଓ ସେମାନଙ୍କୁ ପୂର୍ବରୁ କହି ରଖିଥିଲୁଁ ଯେ ଏଠାରେ 'ଆଶୀର୍ବାଦ ସଭା' କେବଳ ଗୋଟିଏ ଅସ୍ଥିରକାଳବିଶିଷ୍ଟ ପ୍ରଥା । ଆଶୀର୍ବାଦ ସଭାରେ ଚାଣକ୍ୟ, ମଣିରତ୍ନ-ମାଳା, ରଘୁ, କୁମାର ଇତ୍ୟାଦିରୁ ମୁଖସ୍ଥ ଶ୍ଲୋକ କେତେ ଲୋକ ବୋଲନ୍ତି । କିଏ ବା ଶୁଦ୍ଧ ଅଶୁଦ୍ଧ କରି ବେଦରୁ କାଣ୍ଡିଏ ଅର୍ଥ ମନ୍ତ୍ର ବୋଲନ୍ତି । କ୍ୱଚିତ୍ କେହି ଆଶୀର୍ବାଦ ଶ୍ଲୋକ ବା ମନ୍ତ୍ର ପଢ଼ନ୍ତି । ଅନ୍ୟ ବହୁତ ସମସ୍ତେ 'ସଂସ୍କୃତ ସଭା'ର ନିନ୍ଦା କରୁଥାନ୍ତି । ଆଶୀର୍ବାଦ ଶୁଣିବାକୁ

ବା ଧରିବାକୁ ଯେତେ ଲୋକ ନ ଆସନ୍ତି 'ଆଶୀର୍ବାଦ ଦକ୍ଷିଣା' ବା 'ସମ୍ଭାବନା' ଲୋଭଟା ବେଶି ଲୋକଙ୍କୁ ଟାଣିପକାଏ ।

ଶ୍ୟାମଚରଣ ବାବୁ କହିଲେ—ତୁମ ବ୍ରାହ୍ମଣଙ୍କର 'ଦକ୍ଷିଣା' ଲୋଭ ଓ 'ବୃତ୍ତାବନ୍ଧ' ପ୍ରିୟତା ଛାଡ଼ି ନ ଦିବାଯାଏ ବ୍ରାହ୍ମଣଙ୍କ କଥା ଯେପରି ଅଛି ସେହିପରି ରହିବ । ପଇସାଟିଏ ଓ ଧକ୍କାଏ ଦ ଧନ୍ଦା ପାଇବା ଲୋଭରେ ଯେ ଯାହା କୋଣ ଦଉଡ଼ି ପାରେ, ତାର ଉଚ୍ଚ ଆଶା ଯିବାର ସ୍ୱପ୍ନ ।

ମୁଁ କହିଲି ଯେ ଦେଶରୁ ଯେଉଁମାନେ ପଇସା ଟାଣି ନେଉ ଅଛନ୍ତି ଅନ୍ତତଃ ବ୍ରାହ୍ମଣଯାକ ଦକ୍ଷିଣା ଓ ବୃତ୍ତାବନ୍ଧରେ ସେଥିରୁ କିଛି ଓଟାଇ ରଖୁଥିଛନ୍ତି । ଏଢବ ହେଲେ ଅଧ୍ୟାପନା ଥାଉ । ପୂର୍ବ କାଳରେ ରଜା ମହାରଜା ଜମିଦାରମାନେ ସୁବର୍ଣ୍ଣରଞ୍ଜକ ଏବଂ ବିଜ୍ଞ ଥିଲେ, ତେଣୁ ସେମାନେ ବ୍ରାହ୍ମଣମାନଙ୍କୁ ଅର୍ଥ ଚିନ୍ତାରୁ ମୁକ୍ତ କରି ଅଧ୍ୟୟନ ଅଧ୍ୟାପନାଦି କାର୍ଯ୍ୟରେ ବ୍ରତୀ କରି ପାରୁଥିଲେ; କିନ୍ତୁ ଆଜି କାଲି ଚତୁର୍ଥାଂଶ ଛମୁକରଣମାନେ ଚଉଧୁରୀଙ୍କର ସଙ୍ଗାତ, ଜାନ-ମୋହାଟିଏ ପାଇଲେ ଅଣ୍ଟା ଖାଇଲେ ସାଙ୍ଗେ ସାଙ୍ଗେ ପାଞ୍ଚୋଟି ଟଙ୍କା ନାଲିପକେଟଙ୍କ ଅଣ୍ଟାରେ ଗୁଞ୍ଜି ଦେଁତେ; କିନ୍ତୁ ଦେଶର ଶିକ୍ଷା ବୃଦ୍ଧି ବା ନିଷ୍ପାଦ୍ୟ ସହସ୍ରେ ଚାଉଳ ହାଣ୍ଡି ଅଣ୍ଟିରୁ ବ୍ରାହ୍ମଣ ପଣ୍ଡିତଙ୍କୁ ଦେବାଲାଗି ପାଞ୍ଚ ପଧନ ବାହାରିବା କାଠିକର ପାଠ । ଦେଶରୁ ଦାରିଦ୍ର୍ୟ ନ ଯିବା ପର୍ଯ୍ୟନ୍ତ କ ବ୍ରାହ୍ମଣ କ ଜନ୍ମିୟୁ ସମସ୍ତେ ହୀନ କାର୍ଯ୍ୟମାନ କରୁଥିବେ ।

ଶ୍ୟାମଚରଣ ବାବୁ କ୍ଷଣକାଳ ମୌନ ହୋଇ କହିଲେ, ଦେଶର ଦାରିଦ୍ର୍ୟ ଆମ୍ଭେମାନେ ଦୂର କରିବା ନା ଆମ ଲାଗି ଆଉ କେହି ଅବତୀର୍ଣ୍ଣ ହେବେ ? ଯେଉଁ ବ୍ରାହ୍ମଣମାନେ ଦେଶ କାଳ ପାତ୍ର ବିବେଚନା କରି ସହସ୍ର ସହସ୍ର ବର୍ଷକାଳ ସମଗ୍ର ହିନ୍ଦୁ ସମାଜକୁ ବନ୍ଧ୍ୟାବୃତ୍ତିବନ୍ଧରେ ଦୃଢ଼ କରି ରଖି ପାରୁଥିଲେ, ଆଜି ସେମାନେ ପର ହାତକୁ ଚାହିଁଲେ

ଏକା ଲୋକେ କରିବେ କଣ ? ଆଜି କାଲି ଦେଶର ଯେପରି ଅବସ୍ଥା, ଚକ୍ରବର୍ତ୍ତୀ ହୋଇ ଯେଉଁ କାର୍ଯ୍ୟ କଲେ ଧନ ଆସିବ, ଏ ଦେଶସ୍ଥ ବ୍ରାହ୍ମଣମାନଙ୍କୁ ସେହି ଶିଖାଇବାକୁ ହେବ ତାହା ହେଲେ ସମାଜର ପୁନରୁତ୍ଥାନ ଘଟିବ । ଶିଳ୍ପବାଣିଜ୍ୟରେ ଅନେକ ବ୍ରାହ୍ମଣମାନେ ବାଟ କଢାଇବା ପ୍ରୟୋଜନ ହୋଇଅଛି ।

ଶ୍ୟାମଚରଣ ବାବୁଙ୍କ ଯୁକ୍ତିଯୁକ୍ତ ହୃଦୟଗ୍ରାହୀ ବୋଲି ବୋଧହେଲା । ଆମ୍ଭର ଜଣେ ଯାଜପୁରସ୍ଥ ବନ୍ଧୁ ହୁଏତ ପ୍ରକାଶ କରି କହିଥିଲେ ଯେ ସେଠାରେ ଜଣେ ବ୍ରାହ୍ମଣ ନିଜର ପ୍ରଚେଷ୍ଟାବଳରେ କୁମ୍ଭାର କାରଖାନା ଏପରି ଶିକ୍ଷା କରିଅଛି ଯେ କଟକ ବଣିଆମାନେ ତାହାର ଗୁଣ ନିଷ୍ପତ୍ତି ମାନନ୍ତି, କିନ୍ତୁ ତାହାଙ୍କ ଜାତିକୁ ନିର୍ବାଦ କରିବାକୁ ବ୍ରାହ୍ମଣଙ୍କ ସମାଜରେ ଘଟିଅଛି । ଏହି କଥାଟି ମନରେ ପଡିବାରୁ ଉତ୍ତର ସ୍ୱରୂପ ଏକ ଦୀର୍ଘନିଶ୍ୱାସ ପଡିଲା ।



## ପଞ୍ଚମ ସନ୍ଧ୍ୟା ।

---

ଅମ୍ଭମାନଙ୍କ ଗ୍ରାମର ଶ୍ରୀଯୁକ୍ତ ଭଗୀରଥି ସାମନ୍ତରାୟଙ୍କ କନିଷ୍ଠା କନ୍ୟାର ବିବାହୋପଲକ୍ଷରେ ଯେଉଁ ବ୍ୟକ୍ତିମାନେ ତାଙ୍କ ଗ୍ରାମରେ ଉପସ୍ଥିତ ଥିଲେ ସେଥି ମଧ୍ୟରୁ ବାବୁ ରାମହରି ମିଶ୍ର B. A., ବାବୁ ଗୌରାଙ୍ଗ ମହାପାତ୍ର V. L. M. S., ବାବୁ ଶ୍ୟାମସୁନ୍ଦର ମିଶ୍ର (ସାମନ୍ତରାୟଙ୍କ ଜ୍ୟେଷ୍ଠ ଜାମାତା), ବାବୁ ଶ୍ୟାମଚରଣ ପଟ୍ଟନାୟକ (ପଣ୍ଡିତ) ଗ୍ରାମକୁ ବିଦାୟ ହୋଇ ନାହାନ୍ତି; ଦୈବକ୍ରମେ ଏ ଗ୍ରାମର ଶ୍ରୀ ରାମଚନ୍ଦ୍ର ସର୍ଦ୍ଦାର ଆଜି ଗ୍ରାମରେ ଉପସ୍ଥିତ । ଏ ମହାଶୟ ଏଫ୍. ଏ. ପାସ୍ କରି କଲିକତାର ରିପନ୍ କଲେଜରେ ବି. ଏ. କ୍ଲାସ୍ ଏ. କୋର୍ସରେ ଅଧ୍ୟୟନ କରୁଅଛନ୍ତି । କଲିକତାରେ ମହାମାରୀ ରୋଗର ପ୍ରାବଲ୍ୟ ଯୋଗୁଁ ଏହାଙ୍କ କଲେଜ କେତେକ ଦିନ ବନ୍ଦ ଥିବାରୁ ଏ ମହାଶୟ ଗ୍ରାମକୁ ଆସିଅଛନ୍ତି । ସୁଖର ବିଷୟ ଯେ ଏ ମହାଶୟ କଲିକତାରେ ଥାଇ ସୁଦ୍ଧା ମାତୃଭାଷା ପ୍ରତି ମମତା ରଖିଅଛନ୍ତି । ଅନେକ କଲିକତା-ବାସୀ ଓଡ଼ିଆଙ୍କଠାରୁ ଯେପରି ବଙ୍ଗଳାମିଶା ଓଡ଼ିଆ ଶୁଣାଯାଏ, ଏହାଙ୍କ ଭାଷା ସେପରି ନୁହେ । ଏ ମହାଶୟ ଅତ୍ୟନ୍ତ ସରଳପ୍ରକୃତି ଓ ବନ୍ଧୁ-ମାନଙ୍କ ନିକଟରେ କୌଣସି କଥା ଲୁଚାନ୍ତି ନାହିଁ । ଏଥି ନିମନ୍ତେ ସମସ୍ତ ସମୟରେ ଗ୍ରାମର ଅଭିଭାବକମାନଙ୍କଠାରୁ ଅନେକ ନସ୍ତଦ ଭୋଗ କରନ୍ତି । ସେ ଯାହାହେଉ, ଆଜି ଏ ପାଞ୍ଚ ଜଣ ଓ ଦୁର୍ମୁଖ ଶର୍ମା ଟୁଙ୍ଗୀଟିକୁ ମଣ୍ଡିତ କରିଅଛନ୍ତି ।

ବାବୁ ରାମଚନ୍ଦ୍ର ସର୍ଦ୍ଦାର କହିଲେ, 'ଶର୍ମାଙ୍କୁ ଆଜି 'ଡାଇରି'ରେ ବେଶି ଟିପ୍ପଣୀ ଲେଖିବାକୁ ହେବ ନାହିଁ । ମୁଁ ଗୋଟିଏ ପଦ୍ୟ ରଚନା କରିଛି, ସେ ପଦ୍ୟଟି ଆଜି ପାଠ କରିବି । ମୋପରି ଅନୁଭବୀ ଅମ୍ଭ-ମାନଙ୍କ ମଧ୍ୟରେ, ଏମନ୍ତ କି, ଅମ୍ଭମାନଙ୍କ ଗ୍ରାମରେ ଅନେକ ଅଛନ୍ତି । ମାତ୍ର ମୁଁ ଯାହା ପ୍ରକାଶ କରିବି ତାହା ପ୍ରକାଶ କରିବାର ସାହସ

ସମସ୍ତଙ୍କର ନାହିଁ ।' ମର୍ଗନ୍ କେଣେ ସାହିତ୍ୟସେବକ ବୋଲି ଅମ୍ଭେମାନେ ପୂର୍ବରୁ ଜାଣୁ, ଏପରି ସ୍ଥଳରେ ତାଙ୍କର ପଦ୍ୟ ଅବଶ୍ୟ ପଣ୍ଡିତ ମହାଶୟ ଓ ମାଷ୍ଟର ମହାଶୟଙ୍କ ରଚିତ ପଦ୍ୟ ଅପେକ୍ଷା ଉଲ୍‌କୃଷ୍ଟ ହୋଇଥିବ ଏହା ଭାବ ସ୍ଥିର କରିବାକୁ ଅମ୍ଭମାନଙ୍କ ଅଧିକ ସମୟ ଲାଗିଲା ନାହିଁ । 'ମୌନଂ ସମ୍ମତି ଲକ୍ଷଣଂ' ଦେଖି ପାର୍ଶ୍ୱ ମର୍ଗନ୍ ପଦ୍ୟଟି ଆରମ୍ଭ କଲେ ।

'Two silent sufferers meet.'

ଦଉଟି ନୀରବ ଦୁଃଖୀ ନର ମିଳନ ।

ଅସ ଅସ ଭଗ୍ନୀପ୍ରିୟେ କମଳଲୋଚିନ,
ଅସ ଅସ ବାକ୍ୟଦେବି, ନମଠ ପ୍ରେମରେ,
ଦିଅ ଏହି ଅଧୀନଜନେ ଶକ୍ତି କର୍ଣ୍ଣିବାକୁ
ଯାହା ଅନୁଭବ କଲା ଅନ୍ୟ କେ ନ ଜାଣେ;
ଦିଅ ସେହି କୌଶଳ୍ୟ ଯହିଁର ପ୍ରଭାବେ
କହିବା ହୃଦୟ ମୋର ଦୁଃଖ ଅନୁଭବ ।
ଅନୁଭବୀ କୋହି ପୁଣ ଯେବେ ଏ ଘଟନା
ବୁଝିବ, ଜାଣିବ ତେବେ ମୋ ଇଚ୍ଛା ପୂରଣ ।
ସଂସାରର ଦୁଃଖ ସୁଖ ମୋହ ମାୟା ଆଦି,
'ହାୟ ଦୁର୍ଦ୍ଦିନ ମୋର ଭଗ୍ନାଙ୍କୁର'
ଅନୁଭବେ ବୁଝିଛନ୍ତି ସର୍ବ ବୁଦ୍ଧିମାନ;
କିନ୍ତୁ ତେବେ କୋଇ ଏତେ ଅଳସ୍ୟ କରିବା
ଜାଣାନ୍ତି କେତେ ଦୁଃଖ କେତେମାନଙ୍କର ?—
ନିଜ ଦୁଃଖ ବୁଝେ ଯାହା ସଂସାରର ଦୁଃଖ,
ସମାଜର ଦୁଃଖ, ପୁଣି ଅନ୍ୟଷ୍ଟର ଦେହୁ—
ସମାଜରୁ ମଣଠ ମଁ ଦୁଃଖୀ ଦୁର୍ଦ୍ଦମ,
ଯାହାର କଉଣ ମୁଖେ ତେବେ ସାନ୍ତ୍ୱନା,

କେତେ ନିର୍ଦ୍ଦୋଷ ମାନବ ଉତ୍ସର୍ଗି ରୁଧିର
କରନ୍ତି ଦୁର୍ଦ୍ଦମ କ୍ଷୁଧା ଅଳ୍ପ ପ୍ରଶମିତ—
ସ୍ୱଜନର ରକ୍ତପାତେ ଜ୍ୱଳଇ ସେ କ୍ଷୁଧା,
ଦୋଷୀ ନିର୍ଦ୍ଦୋଷ ମଧ୍ୟରେ ନାହିଁ ବିଭିନ୍ନତା ।
ଭ୍ରମୁଥିଲି ସଂସାରରେ ଉନ୍ମାଦିନୀ ପ୍ରାୟେ,
ନ ଥିଲା ଉଦ୍ଦେଶ୍ୟ କେବା ନ ଥିଲା ଉଦ୍ୟମ ।
ମାର୍ଜାରର ଶିଶୁ ଗୃହୀ କଲେ ଅପହୃତ
ମାର୍ଜାରୀ ଭ୍ରମଇ ଯଥା ଶିଶୁ ଅନ୍ୱେଷଣେ—
ଗୃହାନ୍ତରେ ଭ୍ରମେ କେବେ, କେବେ ଗ୍ରାମାନ୍ତରେ,
କେବେ ଜଳାଶୟ ତଟେ, କେବେ କାନନରେ,
ଗ୍ରାମ ପ୍ରାନ୍ତ କ୍ଷୁଦ୍ର ବନ, ଶୈଳ, ଉପବନ,
ଦୁର୍ଗମ ସ୍ଥାନ ସକଳ ଅତି ଆଗ୍ରହରେ
ଅତିକ୍ରମ କରେ ନିଜ ଶିଶୁଲାଭ ଆଶେ ।
କ୍ରୋଧ, ଶୋକ, ଅନୁତାପ, ସେନେହ, ମମତା,
ଅତୀତର ସ୍ମୃତି, ପୁଣି ସଂସାରର ମାୟା,
ଦୁଃଶ୍ଚିନ୍ତାହୃଦୟ ସଦା କରେ ଆଲୋଡ଼ିତ ।
ସବୁ ସ୍ଥାନ ଭ୍ରମି ଶେଷେ ହାରନ୍ତି ଦ୍ରୋଣ
ଫେରନ୍ତି ସେ ନିଜ ସ୍ୱାମିଗୃହକୁ ନିରାଶେ ।
ଯେଉଁ ଦୁଇ ମହୀପାଳ ଜୀବନର ଦୁଃଖ,
ଯାହା ପାଇଁ ଏତେ ବାଧା ବିଘ୍ନ ଅତିକ୍ରମ
ଭ୍ରମିଥିଲା ଏ ଦୁଃଖିନୀ ଦୁର୍ଗମ ସ୍ଥାନରେ,
ସେହି ଶିଶୁଲାଭ ଆଶା ଦୁରାଶା ହୋଇଲା ।
ଭାବିଗଲି "ଆଉ ପ୍ରାଣେ କିସ ପ୍ରୟୋଜନ ?
ପ୍ରାଣ ରଖି ମିଥ୍ୟା ଆଶା କି ଲାଭ ହୋଇବ ?
ଶିଶୁ ଯୋଗୁଁ ଥିଲା ମୋର ଜୀବନ ସାର୍ଥକ—

ପର୍ବତଶିଖରେ ଯାଇ ମହାସମୁଦ୍ରକୁ
ଡେଇଁ ପଡ଼ି ଲିଭାଇବି ଏ ଜୀବନଦୀପ ।'
ଏ ସମୟେ ଆହା କର୍ଣ୍ଣେ କିବା ଦେଲା କହି
'କିପାଇଁ ହେଉଛୁ ତୁହି ବୃଥାରେ ବାଉଳା ?
ଥରେ ଯାଇ ଦେଖି ଆସ ତୋ ସ୍ୱାମିର ଗୃହ
ଯେବେ ତହିଁ ନ ପାଇବୁ ହୋଇବୁ ବିମୁଖ ।'
ମାର୍ଜାରୀ ବକ୍ଷରେ ପଡ଼େ ଏହା କି ସମ୍ଭବେ ?
ଅନ୍ଧ କି ପାଇବ ପଡ଼େ ମୁହିଁ ସ୍ୱର୍ଗପୁଷ୍ପ ?
କିନ୍ତୁ ଆଶା କିରଣରେ ଦେଉଥାଏ ଦେଖା—
ଅବଶେଷେ ମୁଁ ଦୁଃଖିନୀ ଯାଇ ପ୍ରବେଶଇ
ନିଜ ସ୍ୱାମିଗୃହେ—ଦେଖେ ଅପରୂପ ଦୃଶ୍ୟ—
ଗୃହସ୍ୱାମି-ପୁତ୍ର କୋଡ଼େ ଶିଶୁକୁ ଶୁଆଇ
କେତେ ରଙ୍ଗେ ଖେଳୁଅଛି ଶାବକ ସଙ୍ଗରେ !
ମାର୍ଜାରୀ ବକ୍ଷରେ ମୋର ଦିବ୍ୟ ଗନ୍ଧ ହେଲା,
ହଜିଥିଲା ମଣି ମତେ ମିଳିଲା ଅଜାଣେ,
କେ ଜାଣି ବିଧାତା ହରି ନେଇଥିଲା ଶିଶୁ
ବଢ଼ିବାକୁ ମୋର ସୁଖୋଲ୍ଲାସ ଦ୍ୱିଗୁଣିତ ?
ଶିଶୁକୁ ଆଣଇ ପାଖେ, କେତେ ଚୁମ୍ବ ଦିଏ,
ସବୁ କଷ୍ଟ, ସବୁ ଦୁଃଖ ହୁଅଇ ବିସ୍ମୃତ—
ସଫଳ ବୃକ୍ଷ କ୍ଲେଶରେ ଗଣନା ନୁହଇ—
ଆଜି ବନ୍ଧୋ ! ତୋତେ ଯାଇ ମୋହର ହୃଦୟ
କହଇ, ସେହି ମାର୍ଜାରୀ ଶିଶୁ ପାଇ ପଥା ।
କାନ୍ଦିଛି ନୀରବେ କେତେ ଯେଉଁ ଧନପାଇଁ,
ଭାବିଛି ଲକ୍ଷରେ କେତେ ଯେଉଁ ଧନ ଆଶେ,
ଆଜି ସେହି ରତ୍ନ ମୋତେ ମିଳିଲା ହସ୍ତରେ ।

ବର୍ଣ୍ଣିଲ, କହିଥିଲ ନରଦେବ ବାନ୍ଧବ,
ବର୍ଣ୍ଣିଲି, କହିଥିଲି ମରକ ନାରବେ,
ମୋ ଦୁଃଖକାହାଣୀ କେହି ନାହିଁ ଶୁଣିବାକୁ,
ମୋର ଅନୁଭବ ନାହିଁ କେହି ଅନୁଭବ,
ଏହି ଚିନ୍ତା-ଚିତା ଜଳ ଲଭିବ ନରକେ;
ଏ ସଂସାର ଅଟେ ଏକା ଦୁଃଖ-ମରୁଭୂମି,
ଯହିଁରେ ଜନମେ ସଦା ପାପ ତାପ ଶୋକ;
'ଗୃହାରମ୍ଭ କଲେ ଦୁଃଖ'—ଏ ମହାବାକ୍ୟକୁ
ଜପୁଥିଲି, ଜପୁଅଛୁ, ଜପିବ ନରକେ ।
କିନ୍ତୁ ବନ୍ଧୋ ! ଆଜ ଦେଖ ଏ ପରିବର୍ତ୍ତନ !
ତୋତେ ଦେଖି ଆଜ ଅନୁଭବ ପରିପକ୍ୱ;
"ନିଜ ଦୁଃଖ ବନ୍ଧୁଠାରେ କଲେ ପ୍ରକାଶିତ
ଦୁଃଖଭାର ଦ୍ୱିଧା ହୋଇ ହୁଏ ସହନୀୟ"
ଏହି ଯେ ମହତ ବାକ୍ୟ କବି-ଉଚ୍ଚାରିତ
ଅକ୍ଷରେ ଅକ୍ଷରେ ସତ୍ୟ ଜାଣିଲି ମୁଁ ଆଜି ।
ଯାହା ମୁଁ ବର୍ଣ୍ଣିଥିଲି ପୂର୍ବେ ନରକେ,
ସେ ସବୁ ତ ଲିଭିଗଲା ମୁହୂର୍ତ୍ତକ ମଧ୍ୟେ !
ଜଳୁଥିଲା ହୃଦେ ଯେଉଁ ରାବଣର ଚିତା
ସେହି ଚିନ୍ତା-ଚିତା ହେଲା କ୍ଷଣମଧ୍ୟେ ଲୟ ।
ଯାହାକୁ ମୁଁ ଗଣିଥିଲି ଦୁଃଖ-ମରୁଭୂମି,
ପାପ ତାପ ଶୋକ ଚିନ୍ତା ଯହିଁ ଜନମଇ—
ସେ ସଂସାରେ ଦେଖିଲି ମୁଁ ଶ୍ୟାମଳ ଭୂଖଣ୍ଡ
ଯହିଁ ବିରାଜଇ ସୁଖ ସ୍ନେହ ମମତା—
ଯାହା ପାଦେ ବ୍ରହ୍ମାନନ୍ଦ ଲଭଇ ମାନବ,
ଯାହା ପାଇ ବଣିକର ଧନ ତୁଚ୍ଛ ମଣେ ।

'ଗୃହାରମ୍ଭ କଲେ ଦୁଃଖ' ଏହି ମହାବାକ୍ୟ
ଅଟଇ ଅକ୍ଷରେ ସତ୍ୟ ଏହାଟି ନିଶ୍ଚିତ,—
କିନ୍ତୁ ବେଳେ ବେଳେ ପୁଣ ପ୍ରସ୍ରବଣ ପ୍ରାୟେ
ଉଚ୍ଛୁଳ ଉଠେ ଲବଣସମୁଦ୍ରବକ୍ଷରେ ।
( କିମ୍ବା ଯଥା ଦଶାଗ୍ରସ୍ତ ପଥିକ ପଡିଲେ
ନିର୍ଜନ କାନ୍ତାରେ, ଘନ ବରଷା ଅନ୍ଧାରେ,
ଦେଖାଏ ତାହାକୁ ପଥ କ୍ଷଣିକ ବିଦ୍ୟୁତ,
ଅବା ଯଥା ଅମାରାତ୍ରେ ସମୁଦ୍ରର ବକ୍ଷ
ମୁହୁଃ ଆଲୋକିତ ହୁଏ ବଡ଼ବା ପ୍ରସାଦେ । )
କେହିଁ କେହିଁ ଅନୁଭବେ ଦୁହେଁ ସମଭାବେ
ଜଡ଼ିତ ଦୋଇଙ୍କୁଁ ବନ୍ଧୋ ! ତାହା ବର୍ଣ୍ଣିବାକୁ
ଇଚ୍ଛଇ ମୁଁ, କିନ୍ତୁ କାହିଁ ସେ କ୍ଷମତା ମୋର !
ଉତ୍ତମ ଉଦ୍ଦେଶ୍ୟ ବୁଝି ପରର ମଙ୍ଗଳେ
ଅରଂଭିଲି କେତେ କର୍ମ ବହୁତ ଆଗ୍ରହେ;
କିନ୍ତୁ ଧାତା ଲେଖିଅଛି ଅଭାଗା କପାଳେ
ଅଧମ ଉଦ୍ଦେଶ୍ୟ ତହିଁ ଅରୋପନ୍ତି ଜନେ ।
ମୁହିଁ ଯାହା ହିତ ପାଞ୍ଛେ ହୁଏ ସେ ମୋ ରିପୁ,
ଜନସମାଜରେ ରଟେ ମୋ ଅସତ ଭାବ ।
ଇଚ୍ଛୁ ପଛେ, ନାହିଁ ତହିଁ ମୋହର ଅକ୍ଷେପ,
କେବଳ ଅକ୍ଷେପ ବନ୍ଧୋ ! ଏହି କଥା ଲାଗି—
କେଜାଣି, ଶୁଣିଣ ସଦା ଏ ନିଷ୍ଠୁର ନିନ୍ଦା
ଭୁଲିଯିବ ପାପ ମନ ମହତ ଉଦ୍ଦେଶ୍ୟ । (୯)
ଦେଖୁଛି ସମ୍ମୁଖେ ମୋର ଅବ୍ୟାପ୍ତ ଘଟଇ
କିନ୍ତୁ କହିବାକୁ କିପାଁ ନାହିଁ ପରାକ୍ରମ ?
ଯାହା ମୋ ବିବେକଶକ୍ତି କହୁଛି ଅନ୍ୟାୟ

ଉଦର ପୋଷୁଅଛନ୍ତି ତାକୁ ନ୍ୟାଯ୍ୟ ବୋଲି
( ନ ପୋଷିଲେ ନ୍ୟାଯ୍ୟ ବୋଲି, ବୁଡ଼ିଯିବ ଅଗ୍ନି ! )
ବିବେକ ଦେଲ କି ବିଧେ ! ଅପବ୍ୟବହାର
କିଏ ମୁହିଁ କରିଥିବ ଉଦରଙ୍କ ମନ ?
ଦିଅନ୍ତି ଉଦରେ ମୋତେ ଯାତନା ଅନେକ,
ବିବେକରୁ ଲଭି କେବେ ନ କହିବ ବାକ୍ୟ,
ଦିଅନ୍ତି ପଞ୍ଚେ ମୋତେ ସମାଜରୁ ତଡ଼ି,
ନ ମିଳନ୍ତି ଦିନାନ୍ତେ କେବଳେ ଥରେ ମୁଠା ଅନ୍ନ,
ଛାଡ଼ି ନିରଶନେ ପ୍ରାଣ ପ୍ରାନ୍ତର ମଧ୍ୟରେ,
ବରଂ ନ କହିବ କେବେ ଅନ୍ୟାଯ୍ୟକୁ ନ୍ୟାଯ୍ୟ । (୨)

ଦେଖିଲି ଏହି ସଂସାରେ ଧନ ମାନ ପାଇ
ରହି କେତେ ଲୋକ, 'ବଡଲୋକ' ନାମେ ଖ୍ୟାତ,
ତହିଁ ମଧ୍ୟେ ପୁଣି କେତେ ଧରଣ ବିବେକ
ଅସାଧ୍ୟେ କରନ୍ତି ସାଧ୍ୟ, କି ବୁଝିବି ମୁହିଁ !
'ଭାବିବା ଉଚିତ ଅଟେ ପ୍ରତିଜ୍ଞା ବେଳରେ'
ଏହି ଉପଦେଶ ହୃଦେ ନ ଦିଅନ୍ତି ସ୍ଥାନ ।
କାର୍ଯ୍ୟକ୍ଷେତ୍ରେ ଦେଖେଁ, କେଉଁଣେ ଗଲା ସେ ପ୍ରତିଜ୍ଞା,
ପ୍ରତିଜ୍ଞା ଲଙ୍ଘନ୍ତି କେତେ ଛଳନା ଦେଖାଇ !
ଲଙ୍ଘନ୍ତି; ତହିଁର ନାହିଁ ମୋହର ଭାବନା ।
କି ଉତ୍ତର ଦେବେ ? ଯେବେ ହେବ ଉପନୀତ
ପ୍ରଧାନ ଧର୍ମାଧିକାରେ ବହ୍ନି-ସନ୍ନିଧାନେ । (୩)

ପୃଥିବୀରେ ଅସନ୍ତୋଷ କାରଣ ଯେତେକ
ଅଧିକାଂଶ ହୁଏ ନିଜସ୍ୱାର୍ଥରୁ ଜନମ ।
ନିଜ ସ୍ୱାର୍ଥ ସଙ୍ଗେ ଯାର ଶୋଣିତ ସମ୍ବନ୍ଧ
ସେ ହରଇ ଭଲ, ଦିଏ ମନେ କେତେ ବ୍ୟଥା ।

ତନୁ ଅର୍ଦ୍ଧବେଷ୍ଟା ଲୌହ ଶୃଙ୍ଖଳ ଦେଖି
ଯନ୍ତ୍ରାରେ ହଂସଙ୍କୁ କହନ୍ତି ଶମ୍ବୁକ ବଚନ—
'ଜଳ ଥାଉ, ନଭ ଯେ ମୋର ଗାହା ଲାଗି,
ଯିପାଇଁ ଏ ଭ୍ରମ ଭୁଞ୍ଜ ଅରେ ମୂଢ଼ ହଂସ !
ଦେଖାଅ ମୋର ଅଳ୍ପତା କରୁ ପ୍ରତିପନ୍ନ;
ତୋଠାରୁ ଅଧମ ପ୍ରାଣୀ ନାହିଁ ଏ ସଂସାରେ ।' (୭)
ଯେଉଁମାନେ ମୋର ପ୍ରତି ହୃଦେ ଈର୍ଷାଭାବ
ଯତନେ ପୋଷନ୍ତି ଦେବେ ଅନାସ୍ଥା ଧାରଣ,
ଯାହାଙ୍କ ପ୍ରକୃତି ମୋର ପ୍ରକୃତି ସଙ୍ଗରେ
ଏକି ଉପାଦାନେ ନୁହେ ଗଠିତ, ସେପରି
ଏଡଣ ବିବେକ ତାଙ୍କ, ତାଙ୍କ ସଙ୍ଗେ ମିଶି
କଟାଇବି କାଳ, ହରେ! ଅହୋ କି ଯନ୍ତ୍ରଣା !
ସେହି ହୃଦରେ ଜାଣି, ସେମାନେ ମୋ ରିପୁ,
ଅଶଙ୍କିତ ଚିତ୍ତେ କରିବି ମୁଁ ବ୍ୟବହାର ?
ବେଶ୍ୟା-ହାସ୍ୟ ମୁହିଁ ପର ଦେବେ ଶିକ୍ଷି ନାହିଁ,
ବିବେକ ନ ଦିଏ ଏହି ହାସ୍ୟକୁ ପ୍ରଶ୍ରୟ ।
ଅନ୍ତରେ ଯା' ଇଚ୍ଛା ଥାଉ, ବାହ୍ୟେ ନ ହସିଲେ
ବାହ୍ୟେ ବେଶ୍ୟା-ଆଚରଣ କରି ନ ପାରିଲେ
ହେଲି ଅପରାଧୀ, ଅପମାନରେ ପ୍ରୋଥିତ !
କେବେହେଁ ଏଦୁଃଖ ବିଭୋ! ନ ଦିଅ ଶତ୍ରୁକୁ । (୮)
ତବ ଯାହା କହିଛନ୍ତି ଅମର ସଙ୍ଗୀତେ,
'ଅନ୍ୟ ଦୁଃଖ ଦେଖିବ ଇଚ୍ଛା, ପ୍ରଭୋ ! ତେବେ ଦିଅ
ସହିବ ତାହା ସମସ୍ତ ନତ ମସ୍ତକରେ;
ଅରସିକଠାରେ ରସ-ନିବେଦନ-ଦୁଃଖ
କେବେହେଁ ନ ଲେଖ ବିଭୋ! ଅଧମ-କପାଳେ ।'

ଗୁଣୀ ଗୁଣ ପୂଜା କରେ, ନ ଜାଣେ ନିର୍ଗୁଣ;
ମୂରୁଖ ହାତରେ ଗୁଣ ହୁଏ ବିମାନିତ,
ଏହାଠାରୁ ବଳ ଦୁଃଖ କେବା ଅଛି ଅଉ ?
ଦୁଃଖ ଦଅ ବନ୍ଧୋ ! ନାହିଁ ଭହିଁକି ଅକ୍ଷେପ,
କିନ୍ତୁ ଦୁଃଖ ସହିବାକୁ ତୁହେ ବଳ ଦିଅ ।
ଅନ୍ତର୍ଯ୍ୟାମି ! ପାଦ ତଳେ କରୁଛି ପ୍ରାର୍ଥନା
କେଦିଲେ ପୃଥ୍ୱୀ ନରକରେ କରିବ ପ୍ରାଣ
ଚଢ ମହିମାର ନନା ଏ ମୂର୍ତ୍ତି ନ ଫିଟୁ । (୯)।
କୋଟିଏ ସଦସ୍ୟା ମୂର୍ତ୍ତି ସାଧନେ ଅକ୍ଷମ—
କାଳ କେତେ ବୃଥା ଚେଷ୍ଟା, ନ ଗଲା ସଂକେତ—
ଯେଉଁଠାରେ ମନ ଅଛି ମହତ ଉଦ୍ଦେଶ୍ୟେ
ସେଠାରେ କପାଠଁ ଦେଉ ନାହିଁଟି ସୁବିଧା ?
କେତେ କେତେ ସାଧୁ ଚେଷ୍ଟା ସୁବିଧା ଅଭାବେ
ଅରଣ୍ୟ-ରୋଦନେ କେଉଁ ଅଛି ପରିଣତ ।
ସଂସାର ବଳଟ ସ୍ୱରେ କରୁଛି ଚିତ୍କାରଃ—
" 'ଅର୍ଥ, ଅର୍ଥ, ଅର୍ଥ ଛଡ଼ା ନାହିଁ ଅନ୍ୟ ଗତି,
"ସଂସାର-ମନ୍ତ୍ର-ତନ୍ତ୍ରରେ ଘାଳୁଥାଅ ଅର୍ଥ,
"ତେବେ ସିନା ସଂସାରରେ ହୋଇବ ପୂଜିତ;
"ଯେବେ ଅର୍ଥ ନାହିଁ ତେବେ ଯାଅ ଅରଣ୍ୟକୁ,
"ଅରଣ୍ୟ-ରୋଦନ ସାର କର ଯାଉ ପ୍ରାଣ ।''(୧୦)
କ୍ୟାଅଣର-ପ୍ରପୀଡ଼ିତା ଦରଣୀ ଯେସନ
ଜୀବନ ଧନକେ ଥାଇଁଥାଏ ଅରଣ୍ୟରେ,
ଛତ ପ୍ରାଣୀ କହୁଥାଏ ଅନନ୍ତ ଶୋଣିତ,
ଛତ ପ୍ରାଣୀ ଉଡୁଥାଏ ମର୍ମଦାହୀ ଜ୍ୱାଳା,
କିଏ ବୁଝିବ ଏହି ବ୍ୟଥା ପ୍ରଶମିତ ?

ଥାଉଁ ଥାଉଁ କେତେ ବୃକ୍ଷେ ଘଷି ଘଷମ୍ଲାନ
ଲଭେ ବ୍ୟଥା-ପ୍ରଶମନ ! ବନ୍ଧୁରେ ସେ ମନେ
'ଏ ବ୍ୟଥା-ପ୍ରଶମ-ସୁଖ ଅଟଇ କ୍ଷଣିକ',
କିନ୍ତୁ ବହୁଦୂର ଯାଇ ଦେଖିଲା ସେଜନକୁ
ଗତ ଚିହ୍ନଯାକ କେଣେ ହେଲାଣି ଲୁପତ !
ଦୈବକ୍ରମେ ଲାଗି ଯଉ ଔଷଧ-ବୃକ୍ଷରେ
ଲୁପ୍ତ ହୋଇ ଯାଇଅଛି, ଜଣା ନାହିଁ ତାକୁ !
ସେହିପରି ବନ୍ଧୋ ! ଦୁଃଖଜର୍ଜରିତ ପ୍ରାଣେ
ବୁଲୁ ବୁଲୁ ଏ ସଂସାର-ଅରଣ୍ୟ ମଧ୍ୟରେ,
ଜାଣି ନ ଜାଣିଲି, ତୋର ସେନେହ-ଔଷଧ
ଲାଗି ହୋଇଗଲା ମୋର ଯତନି ପୂରତ । ୧୧ ।

ମର୍ଦ୍ଦରାଜେ ତାଙ୍କ ପଦ୍ୟଟି ଶେଷ କଲେ । ଅଳ୍ପ ବନ୍ଧୁଙ୍କ ସମସ୍ତଙ୍କ ଚକ୍ଷୁ ଲୋତକପୂର୍ଣ୍ଣ । ଅଳ୍ପ ବନ୍ଧୁଗଣ ପ୍ରତ୍ୟେକଙ୍କ ମନରେ କେତେ ଅତୀତ ଅନୁଭବ ଉଦ୍ଦିତ ହୋଇ ଗଲା । ବାବୁ ସଦାନନ୍ଦ ମିଶ୍ର B. A. କହିଲେ "ମର୍ଦ୍ଦରାଜ ମହାଶୟ, ଏ ପଦ୍ୟଟିର ନାମ 'ଢେଙ୍କୋଟି ନନ୍ଦୁଣ ଦୁଃଖୀଙ୍କ ମିଳନ' ଦିଅନ୍ତୁ । ଆପଣଙ୍କ ପଦ୍ୟ ଶୁଣି ମୋର ନୈରାଶ୍ୟ-ଜର୍ଜରିତ ପ୍ରାଣରେ ଆଶାର ସଞ୍ଚାର ହୋଇଅଛି । ମୁଁ ଜଣେ ଆପଣଙ୍କର ପଦ-ଅନୁରକ୍ତ" । ବାବୁ ଗୌରାଙ୍ଗ ମହାପାତ୍ର V, L, M, S, କହିଲେ "ଏ ପଦ୍ୟଟିର ନାମ 'ବୃନ୍ଦୋଟି ନନ୍ଦୁଣ ଦୁଃଖୀଙ୍କ ମିଳନ' ଦିଅନ୍ତୁ ।" କ୍ରମଶଃ ଶ୍ୟାମସୁନ୍ଦର ବାବୁ ଓ ଶ୍ୟାମଚରଣ ବାବୁ ଏ ପଦ୍ୟର ଯଥା-ମତ ନାମପରିବର୍ତ୍ତନ କରିବାର ପ୍ରସ୍ତାବ କଲେ । ଅବଶେଷରେ ମୁଁ ସେମାନଙ୍କ ପ୍ରଥା ଅନୁସରଣ କରିବାକୁ ପ୍ରସ୍ତୁତ ହେଲି ଓ ପ୍ରସ୍ତାବ କଲି ଯେ ବର୍ତ୍ତମାନ ପଦ୍ୟଟିର ନାମ ବଦଳାଇବାର ଆବଶ୍ୟକ ନାହିଁ । କାରଣ ଏହା Final decision [ଶେଷ ନିଷ୍ପତ୍ତି] ହୋଇ ନ ପାରେ । ପଦ୍ୟଟି ଯେଉଁ ପତ୍ରିକାରେ ପ୍ରକାଶିତ ହେବ, ସେହି ପତ୍ରିକାର ସମ୍ପାଦକ

ଯେବେ ପୁନର୍ବାର ନାମ ପରିବର୍ତ୍ତନର ପ୍ରସ୍ତାବ କରିବେ ସତ୍ୟ, ତାହାହେଲେ ଆଉ ଥରେ ଏ ପଦ୍ୟର 'Title' ଶିରୋନାମାଟି ବଦଳାଇବାକୁ ଆପଣ [ ଅର୍ଥାତ୍ ସର୍ବଗଣେ ] ବାଧ୍ୟ ହେବେ । ଅତଏବ ସେ ବିଷୟ ଉତ୍ତମ ରୂପେ ବୁଝି ଶେଷ ନିଷ୍ପତ୍ତି କରିବା । ସମ୍ପ୍ରତି ପଦ୍ୟଙ୍କ ଶେଷଭାଗ ପଢ଼ାହେଉଥିବା ସମୟରୁ ଆସି ପଦସ୍ଥ ପିଣ୍ଡାରେ ବସିବାର ଅମ୍ଭମାନଙ୍କୁ ଜଣା ନାହିଁ । ଅମ୍ଭେମାନେ କଥା ବାର୍ତ୍ତା ବନ୍ଦ କଲୁଣି, ଏହି ସମୟରେ ବାହାରେ ବସି ହେଉଥିବାର କଥା—

'ଯେ ମାହା କହ, ସବୁ କଥାର ମୂଳ ଟଙ୍କା, ଟଙ୍କା ବାପର ପୁଅ, ଟଙ୍କା ପୁଅର ବାପ, ଟଙ୍କା ବନ୍ଧୁର ବନ୍ଧୁ, ଟଙ୍କା ଅନ୍ଧର ଅଖି, ଟଙ୍କା ସବୁ । ଅନେକ ମଜୁରା, ଗଡ଼ ପରଶା ।

ଅନ୍ଧଜନା ଟଙ୍କୁ ଖିଲ୍ଲ ଭଣ
ଛରନ୍ଦାଣ୍ଡୀ ବଜା ଜୀର୍ ଯାଉଛେ
ଅର୍ଥହୀନ ଦମ୍ କୁଟଂଗ, ଦମ୍ କୁଟଂଗ, ଦମ୍ କୁଟଂଗ ।

ସେଦିନ ଟୁଙ୍ଗୀରେ ଉପସ୍ଥିତ ସମସ୍ତଙ୍କ ମନ ଏତେଦୂର ପର୍ଯ୍ୟନ୍ତ 'ହରେଇ' ଯୋଡଥିଲା ଯେ ଆଉ 'ବାଜେ ଗପ' କରିବାକୁ କାହାର ମନ ବଳିଲା ନାହିଁ ଓ 'ପୂର୍ଣ୍ଣ-ହୃଦୟ'ରେ ଅମ୍ଭେମାନେ ଟୁଙ୍ଗୀରୁ ପ୍ରସ୍ଥାନ କଲୁଁ । (ପାଠକ ମହାଶୟ ! କ୍ଷମା କରିବେ, ଇଂରାଜୀ ଭାଷାର Full heart ର 'ପୂର୍ଣ୍ଣ-ହୃଦୟ' ଛଡ଼ା ଅନ୍ୟ କୌଣସି ଶବ୍ଦ ମୋର ମନେ ହେଲା ନାହିଁ । )

—:o:—

## ଷଷ୍ଠ ସନ୍ଧ୍ୟା ।

ଅଜ ଟୁଙ୍ଗୀରେ ପଣ୍ଡିତ ମହାଶୟ, ମାଷ୍ଟର ମହାଶୟ, ଘନଚନ୍ଦ୍ର ମର୍ଦ୍ଦରାଜ, ମସ୍ତରାମ୍ ଓ ମୁଁ ଉପସ୍ଥିତ ଥିଲୁଁ । ମୁଁ ମାଷ୍ଟରମହାଶୟଙ୍କୁ କହିଲି, "ମାଷ୍ଟର ମହାଶୟ ! ଆପଣ ପୂର୍ବ ସନ୍ଧ୍ୟାରେ ଉପସ୍ଥିତ ନ ଥିଲେ । 'ଦଉଡ଼ି ନଭୂତ ଦୁଃଖିଙ୍କ ମିଳନ' ଶୀର୍ଷକ ମର୍ଦ୍ଦରାଜଙ୍କ ରଚିତ ପଦ୍ୟଟି ଶୁଣି ପାରିଲେ ନାହିଁ । ବଡ଼ ଦୁଃଖର ବିଷୟ ।"

ମାଷ୍ଟରମହାଶୟ—"ମର୍ଦ୍ଦରାଜ ମତେ ସେ poem (ପଦ୍ୟ)ଟି shew କରି (ଦେଖାଇ) ଥିଲେ । ପଦ୍ୟଟି ମୋତେ good (ଭଲ) ଲାଗିଲା ନାହିଁ । ଭାଗବତଟୁଙ୍ଗୀ ବାସ୍ତେ talk (ଗପ) ର place (ସ୍ଥାନ) । ଏଠାରେ ଏପରି poem (ପଦ୍ୟ) ପଢ଼ା ହେଲେ ଠିକ୍ 'ହାଟ ମଧ୍ୟରେ ବ୍ରହ୍ମଜ୍ଞାନ' ପରି ହେବ । ସେଥିର ଅଗ୍ରେ note [ଟୀକା] ପଣ୍ଡିତ ମହାଶୟଙ୍କ ସାହାଯ୍ୟରେ prepare [ପ୍ରସ୍ତୁତ] କରନ୍ତୁ ।"

ପଣ୍ଡିତମହାଶୟ—"ମଣିର୍ଲୁଠତି ପାଦେଷୁ କାଚଃ ଶିରସି ଧାର୍ଯ୍ୟତେ; ଯଥୈବାସ୍ତେ ତଥୈବାସ୍ତାଂ କାଚଃ କାଚଃ ମଣିର୍ମଣିଃ ।" 'ଅରସିକେଷୁ ରସସ୍ୟ ନିବେଦନଂ ଶିରସି ମାଲିଖ ମାଲିଖ ମାଲିଖ' 'ତସ୍ମାଦର୍ଥମୁପାର୍ଜ୍ଜୟସ୍ୱ ହି ସଖେ ହ୍ୟର୍ଥେନ ସର୍ବେ ବଶାଃ ।' ଏବମ୍ଭୂତ କତିପୟ ଶ୍ଳୋକାନୁବାଦରେ ପାଣ୍ଡିତ୍ୟ ପ୍ରକାଶ କରି ମର୍ଦ୍ଦରାଜେ ଯଶୋଲିପ୍ସା କରୁଅଛନ୍ତି । ମହାତ୍ମା ଜୌନାସୀ ଧୃଷ୍ଟିମା ପଦ୍ୟଟି ଯଶୋଲିପ୍ସୁମାନଙ୍କର ଆଦରଣୀୟ ଏବଂ ଅନୁକରଣୀୟ ।"

ମୁଁ ଓ ମର୍ଦ୍ଦରାଜ ଦେଖିଲୁଁ ଯେ ପଣ୍ଡିତମହାଶୟଙ୍କର ଆଜି 'ମଦଭାପ ଦଅପିନାଦ'ର ଅବସ୍ଥା, ଟିକିଏ ଯାଇ ହେଲେ ବେଳେ ତାହାର ଫଳ ଝଡ଼ିବାର ସମ୍ଭାବନା ! ମୁଁ ଦଅପିନାଦ ଯିବାକୁ ଆରମ୍ଭ କଲି ।

"ପଣ୍ଡିତମହାଶୟ, ଗତ ସନ୍ଧ୍ୟା କଥା ଆଜି କାହିଁକି ପକାଉଛନ୍ତି ? ସେ ପଦ୍ୟଟି ଆପଣଙ୍କ ପଦ୍ୟଠାରୁ ନୀରସ । ସେ କଥା ଥାଉ; ଆଜ

ଆପଣଙ୍କଠାରୁ କେତେକ ବିଷୟ ଶୁଣିବାର ଇଚ୍ଛା । ସ୍ତ୍ରୀଶିକ୍ଷା ବିଷୟରେ ଆପଣଙ୍କ ମତ କଣ ?

ପଣ୍ଡିତମହାଶୟଙ୍କ Engine (କଳ) ଗଡ଼ିଲା, "ସ୍ତ୍ରୀଶିକ୍ଷା ପ୍ରଚଳିତ ନ ହେବା ପର୍ଯ୍ୟନ୍ତ ସ୍ୱଦେଶରେ ପାକ କରିବାକୁ ହେଉ ନାହିଁ । କମ୍ପ-ଦିବାନିଶିର ତୁମ୍ଭମାନଙ୍କ ସମସ୍ତଙ୍କୁ ବଡ଼ଲୋକ ଓ ମଧ୍ୟବିତ୍ତ ମନୁଷ୍ୟ ପାକ ଓ ଗୃହମାର୍ଜନାଦିରେ ଭୃତ୍ୟ ନିଯୁକ୍ତ କରିବେ ଓ ନିରର୍ଥକମାନେ (ପଣ୍ଡିତମହାଶୟ ଗରିବଲୋକ ଅର୍ଥରେ ଏ ଶବ୍ଦ ବ୍ୟବହାର କଲେ ପରା ?) ନିଜେ ନିଜେ ରନ୍ଧନ ପରିବେଷଣାଦି କ୍ରିୟା ସମାପନ କରି ଶିକ୍ଷାପ୍ରାପ୍ତା ସ୍ତ୍ରୀମାନଙ୍କର କିଙ୍କରୀଭୂତ ହେବେ । ହା କଷ୍ଟଂ ଖଳୁ ବର୍ତ୍ତତେ କଳିଯୁଗେ ଧନ୍ୟା ମୂଢା ଯେ ନରାଃ । ବେଶି ଦିନ ରହିଲେ ବେଶି କଥା ଦେଖିବାକୁ ହୁଏ । ଅସ୍ମଦ ବାଲ୍ୟାବସ୍ଥାରେ ସ୍ତ୍ରୀମାନେ ରାତ୍ରି ଦୁଇ ଦଣ୍ଡ ଥାଉଁ ଗାତ୍ରଯୋଗ (ବୋଧହୁଏ ଗାତ୍ରୋତ୍ଥାନ) କରି ପ୍ରାତଃକୃତ୍ୟ ବହିର୍ଦେଶମାର୍ଜନାଦି ସମାପନାନ୍ତେ ଗ୍ରାମବାସିଙ୍କ ଅଜ୍ଞାତରେ ଗୃହକୁ ଅବତୀର୍ଣ୍ଣା ହେଉଥିଲେ; ଆଜିକାଲି ନବାଗତା ବଧୂମାନେ ଦିନ ଦୁଇ ଘଡ଼ି ନ ହେଲେ ଭୁଜଙ୍ଗକଳୁଷହବାସ-ପୁଷ୍ପ-ଶଯ୍ୟାତ୍ୟାଗିନୀ ହେବାକୁ ଅନିଚ୍ଛୁକା । ପୂର୍ବେ ସ୍ତ୍ରୀମାନେ ଅର୍ଦ୍ଧବୃଦ୍ଧା ହେବା ପର୍ଯ୍ୟନ୍ତ ତାଙ୍କ କଣ୍ଠକୂଜନ କାହାର ଶ୍ରୁତିବିଷୟୀଭୂତ ହେଉ ନ ଥିଲା । ଅଧୁନା ନବାଗତା ବଧୂମାନେ ଶ୍ୱଶ୍ରୂ ପ୍ରଭୃତି ଗୁରୁଜନମାନଙ୍କ ସଙ୍ଗେ ବାଗ୍‌ଯୁଦ୍ଧ କରିବାକୁ ଅକୁଣ୍ଠିତା ଓ ତାମ୍ବୁଲଖଣ୍ଡଦ୍ୱାରା ଦନ୍ତୋଷ୍ଠ ରକ୍ତ କରି ବହିର୍ଦ୍ୱାରରେ ଦଣ୍ଡାୟିତା ହୋଇ ସ୍ୱାମିସହ ସଙ୍ଗୀତାଳାପ କଲେଣି । ଏବେ ସ୍ୱାଧୀନଭାର୍ଯ୍ୟାଜନରେ ସଂସାରର ପରନ୍ତୁ ସମାଜର ଅମଙ୍ଗଳ । ଗୀତାରେ ଅର୍ଜୁନ କହିଅଛନ୍ତି 'ଅଧର୍ମାଭି-ଭବାତ୍ କୃଷ୍ଣ ! ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ । ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ! ଜାୟତେ ବର୍ଣ୍ଣସଙ୍କରଃ ।' ଅଧୁନା 'ନାରୀବଶା ମାନବାଃ ।' ଆଜିକାଲି ସ୍ତ୍ରୀମାନଙ୍କ ସ୍ୱାତନ୍ତ୍ର୍ୟ ପରାକାଷ୍ଠାକୁ ଲଭିଲାଣି । ଏବେ ସ୍ତ୍ରୀମାନଙ୍କଠାରୁ ଭୟ କରି ଚଳିବାକୁ ବାଧ୍ୟ । ନବ୍ୟମାନେ ଈଦୃଶଯୁକ୍ତ ସ୍ତ୍ରୈଣ ହୋଇ

ଅବଳାମାନଙ୍କୁ ବଳ ପ୍ରଦାନ କରୁଅଛନ୍ତି । ଅତଏବ 'କଳୟେ ନମସ୍ତେ ।' ସ୍ତ୍ରୀମାନଙ୍କୁ ଶାସନ କରିବା ଦୂରେ ଥାଉ, ସେମାନଙ୍କୁ ଜଗଦମ୍ବସ୍ୱ ମଣି ପାଦପୂଜା କରୁଅଛନ୍ତି ଓ ଗୁରୁଜନମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ମନ୍ତ୍ରଣା ଦେଉଅଛନ୍ତି । ତ୍ରିକାଳଜ୍ଞ ମହର୍ଷିମାନଙ୍କର ଭବିଷ୍ୟଦ୍ବାଣୀ କି ମିଥ୍ୟା ହେବ ?

ମର୍ଦ୍ଦରଜେ କହିଲେ, "ପଣ୍ଡିତ ମହାଶୟ, ଆପଣ ଯାହା ହଉନ କଲେଜର ସଂସ୍କୃତ ପ୍ରୋଫେସର୍ ନ ହେଲେ, ଏହା ଅକ୍ଷେପର ବିଷୟ । ଆପଣଙ୍କର ବାଗ୍ମିତା 'ବାନ୍ଦର ଗଳାରେ ମାଣିକ୍ୟ' ପଡ଼ିବା ପରି ଏ ଟୁଙ୍ଗୀରେ ଅନାବୃତ ହେଉଅଛି । ଆପଣ ଟିକିଏ ସ୍ଥିରଚିତ୍ତ, ଧୀର-ବୁଦ୍ଧିରେ ବିଚାର କରନ୍ତୁ ଯେ ଆପଣ ନିଜେ ଆପଣଙ୍କ ଯୁକ୍ତିଦ୍ୱାରା ପରାସ୍ତ ହେବେ । ଆପଣ କହୁଛନ୍ତି ଯେ କଳିଯୁଗରେ ସ୍ତ୍ରୀସ୍ୱାଧୀନତା ଘଟିବ ବୋଲି ତ୍ରିକାଳଜ୍ଞ ମହର୍ଷିମାନେ କହି ଯାଇଅଛନ୍ତି । ତାହା ଘଟିଲା ବୋଲି ଆପଣ କ୍ଷୋଭ କରୁଅଛନ୍ତି । ଆପଣଙ୍କ କହିବା ଅନୁସାରେ କଳିଯୁଗ ତ ସତ୍ୟଯୁଗ ହେବ ନାହିଁ । ଯାହା ଅବଶ୍ୟମ୍ଭାବୀ ତାହା ନିମନ୍ତେ କ୍ଷୋଭ କରିବା ଅସାର ପ୍ରଳାପ ଛଡ଼ା ଆଉ କିଛି ନୁହେ । ଯୁଗର ସ୍ରୋତ ବିରୁଦ୍ଧରେ ଯିବା କେବଳ ଅରଣ୍ୟରୋଦନ । ଆଧୁନିକ ସଭ୍ୟତା ସ୍ତ୍ରୀଶିକ୍ଷା ଓ ସ୍ତ୍ରୀସ୍ୱାଧୀନତାର ପକ୍ଷପାତୀ, ଯେତିକି ସେମାନଙ୍କୁ ପିଞ୍ଜରାବଦ୍ଧ ପକ୍ଷୀ କରିଥିଲ ସେତିକି !"

ମସ୍ତରାମ୍ କହିଲା "ପଣ୍ଡିତେ ! ତୁମେ ତ ବୁଢ଼ା ହେଲ, ବଳ ବୟସ ଗଲା, ସୁଖ କରି ପାରିଲ ନାହିଁ । ଏବେ ପିଲାଙ୍କ ସୁଖ ଦେଖି ମନ ରଟେଇ ଖଟେଇ ହଉଛ । ମୁଁ ମଧୁଆ ମାଲୁ (ମସ୍ତରାମ ପୁଅର ନାମ ମଧୁ) ଦିନେ ପଚାରିଲି, ହଇ ଲୋ, ତୁ ବୋହୂକୁ ଏତେ ଅବସ୍ଥା ଦଉଛୁ କାହିଁ ? ସେ କହିଲା, ମୋ ଶାଶୁ ମତେ ଯେଉଁ ଅବସ୍ଥା ଦେଉଥିଲା, ମୁଁ ତାକୁ ଶୁଝୁଛି ପରା ! ଧନ୍ୟରେ କାଳ ! ବାପ ମା ଆପଣା ପୁଅ ବୋହୂଙ୍କ ସୁଖ ଦେଖି ନ ପାରି ରଟେଇ ଖଟେଇ ହେଉଛନ୍ତି । କଳିଯୁଗକୁ

ଦୋଷ ଦେବେ । ବନ୍ଧୁବର, ଅମେ ତ ସର୍ତ୍ତି ପଢ ଦକ ବାଟିଲୁଁ । ଅମର ତ ଦ'ହାତ ଦ'ଗୋଡ଼, ଧ୍ୟାନର ତ ଦ'ହାତ ଦ'ଗୋଡ଼ । ଏ କଥିଁ ଅଳ ପୂଜାରେ ରହିବେ ? ପଣ୍ଡିତେ, ତୁମ ଘରେ ଶାଶୁ ବୋହୂଙ୍କର କଳ ହଉଥିଅ ଲାଗେ ନାହିଁ କି ? ଶାଶୁ ତ ସାରା ଦିନ ବୁଲି ତୁମ ବୋହୂର ଗୁଣ ଗାଇ ବୁଲୁଥାନ୍ତି । ଯେ ଶୁଣୁଥାଏ ସେ ଶାଶୁକୁ ଏକ-ଛରପା ଉଡ଼ିଇ ଦିଏ । ଅବୁଝାମଣା ଲଜ୍ଜାକୁ ପାଲଟିଗଲା ନାହିଁ! ଅଜ ଭାଲି ଶାଶୁ ବୋହୂ ଦଳ ହେଲା ସବୁଠେଇଁ । ବୋହୂ ଟିକେ ପାଦ ଖାଉଛି, ସେହି ଶାଶୁଙ୍କଠାରୁ ପ୍ରବଳ ବାହାରିଲା । ଯେଉଁଠି ବୋହୂର ସୁଅର ଦଳ ହେଲେ ଟିକେ ଦେଖା ହେଲା, ପଶ୍ଚାତ ବାଦ୍ ଯାଇ ତମାମ୍ ଲାଗର ବାଜିଗଲା । ଦଳ ପଡ଼ତେ ବୋହୂ ବାଁଶୁଆ ଉଠିଲା, ଷାଠ ମାଇପେ ପଡ଼ନ୍ତ ଧରିବ ତାକୁ ହାତ୍ ହାତ୍ କରି ଖାଇ ଯିବେ । ଗାମୁଛା ତୋଟରେ ଖୁଣ୍ଟିର ପଡ଼ିଯିବ, ଅକ ଅମୂଳ ଘର ବୋହୂ ଦଳ ଦ'ଘଡ଼ରେ ଉଠିଲା । କି ନାଷ୍ଟିକ ହାଲ ହେଲା ! 'ମୁଁ ତ ଯାଏଁ ମୋହର ଗାଈ, ଖୋର କଥିଁ ଗାଲରେ ହାତ' ।"

ପଣ୍ଡିତ ମହାଶୟ ନିଜ ଗୃହଛିଦ୍ର ପଦାରେ ପ୍ରକାଶିତ ହେବାର ଦେଖି ଲଜ୍ଜାରେ କିଂକର୍ତ୍ତବ୍ୟବିମୂଢ଼ ହେଲେ । ପଛକୁ ନିଶ୍ବାସ କରି ଉଠିଲେ "ଜନ୍ତୁଂ କୃତଂ କୃତଂ ମୌନଂ କୋକିଲୈର୍ଜଳଦାଗମେ । ଦର୍ଦ୍ଦୁର ଯତ୍ର ବକ୍ତାର ସ୍ତତ୍ର ମୌନଂ ହି ଶୋଭନଂ ।"

ମୁଁ ଦେଖିଲି ଯେ ଏ ପ୍ରସଙ୍ଗର ସ୍ରୋତକୁ ଅନ୍ୟ ଆଡ଼କୁ ନ ଫେରାଇଲେ ପଣ୍ଡିତେ ଓ ମନ୍ତ୍ରୀଙ୍କ ମାଡ଼ ମରାମରି ହେବେ । ବିଶେଷତଃ ପଣ୍ଡିତଙ୍କର ଓ ମନ୍ତ୍ରୀଙ୍କର ପୂର୍ବରୁ ବିବାଦ ।

ଅମ୍ଭେମାନେ ଏପରି ଅବସ୍ଥାରେ ବସିଛୁଁ, ଏହି ସମୟରେ ଟୁଙ୍ଗୀ ଦାଣ୍ଡରେ 'ଜୟ ରାମଜୀଙ୍କି ଜୟ, ସୀତାରାମ ଯନ୍ତ୍ରଥାଙ୍କ' ଧ୍ୱନି ଉଠିଲା । ଅମ୍ଭେମାନେ ଦେଖିଲୁଁ ଯେ ଯାଜକ ବାହକ, ଦାସ ଦାସୀ, ଥୋକେ ବସ୍ତାରେ ପରିବୃତ ହାତି ଶୋଭାରେ ହଳିଡ଼ ୨୦୨୫ ଜଣ ବୈଷ୍ଣବ

ଅଛି ଉପସ୍ଥିତ । ବାଟରେ ସ୍କୁଲ ମଇ ବାବୁ ଧଉ ଏହିପରି ଢଙ୍ଗ ଥଇ ଗ୍ରାମର ଜମିଦାରଙ୍କ ଘରେ ଜବରଦସ୍ତି ଅତିଥ୍ୟ ଗ୍ରହଣ କରିବାର ସଙ୍କଳ୍ପ କରି ଆସି ଅଛନ୍ତି । ଦୂରରୁ ଆମ୍ଭମାନଙ୍କୁ ଦେଖି 'କମାଣ୍ଡିଂ'ର ମହନ୍ତମହାଶୟଙ୍କ ବଜ୍ରଗମ୍ଭୀରସ୍ୱରରେ ଚିତ୍କାର କରି ଜମିଦାରଙ୍କୁ ଗ୍ରାମ ଦେଖାଇ ଦେବାକୁ କହିଲେ ଓ ସୁଯୋଗରୁ ଜମିଦାରଙ୍କ ଘର ଦେଖାଇ ଦେବାକୁ ପଣ୍ଡିତମହାଶୟ 'ବାବାଜି'ମାନଙ୍କ ସଙ୍ଗରେ ଗଲେ ।

ମୁଁ କହିଲି 'ପଣ୍ଡିତ ମହାଶୟ ଆଜି ପାକେ କଡ଼ା ଔଷଧ ପାଠକଲେ ।'

ମାଷ୍ଟର ମହାଶୟ—ଆଗେ ଯାଣୁମାନେ ବୋଲୁଛି ଏ ଘରକୁ ଅଣାଇଲ butcher ( କଂସାଇ ) ଗୋଟିଏ fat lamb [ସ୍ଥୂଳ ମେଷ] ପାଇ ଯେପରି glad (ଆନନ୍ଦିତ) ହୁଏ, ସେହିପରି ହେଉଥିଲେ । ଭାବୁ-ଥିଲେ 'I am the monarch of all I survey' । ବଧୂମାନଙ୍କ ଜୀବନ slave [କ୍ରୀତଦାସ] ଜୀବନ ଅପେକ୍ଷା କଷ୍ଟକର ଥିଲା । day and night [ଦିନରାତି] ଘରେ ମାଡ଼ ଖାଇ, ଗାଳି ଖାଇ, ସଦା ଲୋକଙ୍କ ଅସମ୍ମାନ bear କରି କରି [ସହିସହି] କବାଟ କଣରେ silently ଭୁଇଁ ଟୋଇ କାନ୍ଦି କାନ୍ଦି ଦିନଗତ ଯାଉଥିଲା । କେତେ innocent creature [ନିର୍ଦ୍ଦୋଷ ପ୍ରାଣୀ] ଏପରି cruelty ନିଷ୍ଠୁରତା ସହି ନ ପାରି untimely death [ଅକାଳ ମୃତ୍ୟୁକୁ] ଆନନ୍ଦସହକାରେ ଆଲିଙ୍ଗନ କରିଅଛନ୍ତି ।

ସର୍ବଜ୍ଞ କହିଲେ—ଜଣେ ବିଖ୍ୟାତ ଆମେରିକ ଲେଖକ ଗୋଟିଏ ପଦ୍ୟ ଲେଖି ଅଛନ୍ତି । ସେ ପଦ୍ୟରୁ ଗୋଟିଏ ଅଂଶ ମନେ ପଡ଼ିଲା ।

'O hearts, that break and give no sign
Save whitening lip and fading tresses,
Till death pours out his cordial wine
Slow-dropped from misery's crushing presses,
If singing breath, or echoing chord
To every hidden pang were given,

What endless melodies were poured
As sad as earth, as sweet as heaven !

ଏପ୍ରକାର ଚାତୁର୍ଯ୍ୟ ଏହି କ ସଦ୍ୟପି ପ୍ରତ୍ୟେକ ଅପ୍ରକାଶିତ ଦୁଃଖ ପଦାରେ ପ୍ରକାଶିତ ହେଉଥାନ୍ତା, ତେବେ ଅହା ! କେତେ ଅଦ୍ଭୁତ ମଧୁମୟ ଓ ଦୁଃଖପୂର୍ଣ୍ଣ ସଙ୍ଗୀତ ଅଜସ୍ର ଧାରରେ ବହୁ ନ ଥାନ୍ତା !

ଏହି ସମୟରେ ଗ୍ରାମ ମଧ୍ୟରେ ଜମିଦାରଙ୍କ ଗୃହନିକଟରେ ଘୋର କୋଳାହଳ ଶୁଣି ଗୋଚର ହେବାରୁ ଅମ୍ଭେମାନେ ଚଟୁଙ୍ଗୀ ତ୍ୟାଗ କରି ଘଟଣା ସ୍ଥଳକୁ ଯାଇଁ ଦେଖିଲୁଁ ଯେ ଜମିଦାର ବାବୁ ଜମାଇଙ୍କ ପାଖରେ ବାବାଜୀମାନଙ୍କ ସିଧା ସରଞ୍ଜାମ, ଗୋରୁ ଘୋଡ଼ାଙ୍କ ପାଇଁ ଘାସ କୁଟା ଓ ଦାନା, ଦାଣ୍ଡି କାଠ ଉପସ୍ଥିତ କରାଇ ଗଳଲଗ୍ନୀକୃତବସ୍ତ୍ର ହୋଇ ଠିଆ ହୋଇ ଅଛନ୍ତି ଓ ବାବାଜୀମାନେ 'ଗଞ୍ଜା ଖର୍ଚ୍ଚା' ୧୫ ଟଙ୍କା ନ ପାଇଲେ ଜମିଦାରଙ୍କ ଘରୁ ପ୍ରସାଦ ନ ପାଇ ବାହାର ଯିବେ ଓ ଅଭିଶାପ ଦେବେ ବୋଲି ଚିତ୍କାର କରୁଅଛନ୍ତି । ଅବଶେଷରେ ଜମିଦାର ବାବୁ ଗଞ୍ଜା ଖର୍ଚ୍ଚା ପାଇଁ ୫ ଟଙ୍କା ଆଣି ଦେବାରୁ ବାବାଜୀମାନେ ଜମିଦାରଙ୍କ ଦାଣ୍ଡରେ ଗୋରୁ, ଘୋଡ଼ା, କୁଟ ଇତ୍ୟାଦି ବାନ୍ଧି ଶ୍ରେଣୀବଦ୍ଧ ଉପବିଷ୍ଟ ହେଲେ ଓ ଭୋଜନର ଆୟୋଜନ କଲେ ।

ଅମ୍ଭେମାନେ ମନେ ମନେ ଭାବିଲୁଁ, 'ଧନ୍ୟ ବାବାଜୀମାନେ ! ତୁମ୍ଭେମାନେ ସଂସାରରେ 'ବୈରାଗୀ' ନାମରେ ଅଭିହିତ । କିନ୍ତୁ ସଂସାରୀମାନଙ୍କ ଅପେକ୍ଷା ତୁମ୍ଭେମାନେ ଇନ୍ଦ୍ରିୟସୁଖରେ ଦୃଢ଼ତରଭାବରେ ଲଗ୍ନ । ହାୟ ! ଭଗବାନଙ୍କ ନାମର ତୁମ୍ଭେମାନେ କି ଅପବ୍ୟବହାର କରୁଅଛ । ଗଞ୍ଜା ନ ହେଲେ ଧର୍ମ୍ମ ରହି ପାରିବ ନାହିଁ । ସିଧା ସାମଗ୍ରୀର ପରିମାଣ ଟିକିଏ ଅଳ୍ପ ହେଲେ ସୃଷ୍ଟି ପ୍ରଳୟ । ତୁମ୍ଭମାନଙ୍କ ମଧ୍ୟରେ ବିବାଦର ସୀମା ନାହିଁ । ତୁମ୍ଭମାନଙ୍କ ମଧ୍ୟରେ ସନ୍ତୋଷ ନାହିଁ । ସଂସାରର ସମସ୍ତ ଦୋଷ ତୁମ୍ଭମାନଙ୍କଠାରେ ଷୋଳକଳାରେ ପୂର୍ଣ୍ଣ । ତୁମ୍ଭମାନଙ୍କର ଚିତ୍ତ ଅଧୀନ ନାହିଁ । ମୁଣ୍ଡିରେ ବୈରାଗ୍ୟ ଦେଖାଇଲେ ପ୍ରକୃତ ବୈରାଗ୍ୟ ହୁଏ ନାହିଁ । କାହିଁ ଈଶ୍ୱରଧ୍ୟାନରେ ସମୟ ଯାପନ

କରନ୍ତୁ, ତାହା ନ କରି ପେଟଚନ୍ଦାରେ ତୁମ୍ଭମାନଙ୍କ ସମୟ ଯାଉଛି । କେବେ ସଂସାର ଛାଡ଼ିଲ କାହିଁ ? ସଂସାର ଛାଡ଼ିବା ସହଜ ନୁହେ । ଜୀବ ଥିବା ଯାଏ ସଂସାର ଛାଡ଼ି ହେବ ନାହିଁ । ବୈରାଗୀ ମାନେ ଅସମ୍ଭବତାର ଜ୍ୱଳନ୍ତ ପ୍ରମାଣ ଦେଖାଉଅଛନ୍ତି । ତୁମ୍ଭମାନଙ୍କ ମଧ୍ୟରୁ 'ବୈରାଗୀ' ପଦବାଚ୍ୟ ଶତକରେ ଜଣେ ଅଧେ ମିଳିବା କଷ୍ଟ । କେବଳ ଧର୍ମର ଦୋହାଇ ଦେଇ ଲୋକମାନଙ୍କୁ ଠକାଉଅଛ । ଈଶ୍ୱରଙ୍କ ଧ୍ୟାନରେ ସମୟ କାଟ । ଯେବେ ସେ ପନ୍ଥା ଧରିବ, ତେବେ ଈଶ୍ୱର ଅବଶ୍ୟ ତୁମ୍ଭମାନଙ୍କୁ ଦିନାନ୍ତେ ଭୋଜନ ଦେବେ । ସଂସାରରେ ବାପା ଓ ମାଙ୍କ ମଧ୍ୟରେ ଯେଉଁ ଶାରୀରିକ ସମ୍ପର୍କ, ତୁମ୍ଭମାନଙ୍କ ମଣ୍ଡଳରେ 'ବାବାଜୀ' ଓ 'ମାଈଜୀ'ଙ୍କ ମଧ୍ୟରେ ସମ୍ପର୍କଟା ତା ଅପେକ୍ଷା ଅଧିକ ଘନ ।'

ମସ୍ତରାମ୍ ଜୋର କହିଲା, 'ମୁଁ ଦିନାକେତେ ଜମାତଙ୍କ ସାଙ୍ଗରେ ଥିଲି । ନିତ୍ୟ ଅରୁଆ ଅନ୍ନ, ଗୁଆ ଘିଅ, ଦେହିଳିଆ ଡାଲି ଭୋଜନ ମିଳେ । ଏଣେ ମୁଁ ଲୁଚାଇ କରି ମାଛ ପୋଡ଼ି ଖାଏଁ । ପହିଲେ ପହିଲେ ମୋତେ ଜୋଡ଼ାଢାସ କାଟିବାକୁ ହେଲା, ତେବେ ଧନ ବର୍ଜନ କରିବାକୁ ପଡ଼ିଲା । ଧନେ ମୋ ମାଛଖିଆ ଧରା ପଡ଼ିବାରୁ ବୈଷ୍ଣବମାନେ ଚିମଟା ଚଟେଇ ମୋଠାରୁ ଟାଣି ନେଲେ । "ମାଛ ଛାଡ଼ିବ ବୋଲି କହିବ ନାହିଁ, ମୋ ବୈଷ୍ଣବ ହେବା କଥା ଜୋହିଲା !" ମୁଁ ପଳେଇ ଆସିଲି ।'

ମୁଁ କହିଲି, 'ଦିନକୁ ଦିନ ଏମାନଙ୍କ ଅତ୍ୟାଚାର ବଢ଼ୁଛି । ଲୋକେ କ୍ରମଶଃ ଏମାନଙ୍କର ପ୍ରତାରଣା ବୁଝି ପାରୁଅଛନ୍ତି । ଏମାନଙ୍କ ସଂଖ୍ୟା କମି ଯିବାକୁ ବେଶି ଦିନ ନାହିଁ । ମହାପୁରୁଷମାନେ ଯେଉଁବେଳେ ଲକ୍ଷ ଲକ୍ଷ ଟଙ୍କାର ଗ୍ରାମର ସମ୍ପତ୍ତି ସାଧାରଣ ଦାନ ଓ ଯୋଗ୍ୟଲୋକଙ୍କ ସାହାଯ୍ୟକଳ୍ପେ ଛାଡ଼ିଦେଇ ଯାଇଥିଲେ ସେ ସମୟରେ ସେବାଏତ-ମାନଙ୍କର ଏପରି ଯୋଗ୍ୟ ହାଣା ବଂଶଧର ହେବେ ବୋଲି କଏ କଳ୍ପନା କରିଥିଲେ ? ସଦାବର୍ତ୍ତ ସମ୍ପତ୍ତିର ଅଧିକାଂଶ ସ୍ଥଳରେ ଯେଉଁ ସଦ୍‌

ବ୍ୟବହାର ହେଉଥିଲା, ସେହିଁକି ଦେଶଦ୍ରୋହିମାନଙ୍କ ତମ୍ବୁ ଥିଲା । ଚତୁର୍ଥ ଶ୍ରେଣୀର ସନ୍ନ୍ୟାସୀ ଏଁ ବାବାଜୀ ଶତକଥା କେବେ ?

ଏଁ କଥୋପକଥନ ପରେ ଆମ୍ଭେମାନେ ଦେଖିଲୁଁ ଯେ ବାବାଜୀମାନଙ୍କ ସନ୍ତାପଣା ଆରମ୍ଭ ହେଲା । ଏହି ସମୟରେ ଗ୍ରାମର ପ୍ରଧାନ ହୁଷ୍ଟ ବାଳକ ନଦୀ ନ ଦେଖି ବାବାଜୀଙ୍କୁ ପ୍ରଶ୍ନ କଲା 'ବାବାଜୀ ତୁମେ ଗଞ୍ଜେଇ ଖାଅ ନାହିଁକି ?'

ମହାରାଜ ଉତ୍ତର କଲେ 'ଅରେ ନେଙ୍ଗ ! ତୁ କ୍ୟା ବୁଝେଗା ?
ଭଙ୍ଗ ଖାଏ ଉଲ୍‌ଭକାଏ ଦାଡ଼ୀକା ଝାଡ଼୍ ନିକାଡ଼୍‌କେଲୁ,
ଭଷିଆ ଖାଏ ରହଣେଯାଏ କାମିନୀକେ ମନ୍ ମୋହକେଲୁ
ଛନୀ ଖାଏ ମାଲ୍‌ଯୁକ୍ ଲରେ ହାଥିକା ଦାନ୍ତ ନିଖାଡ଼୍‌କେଲୁ
ଯୋଗୀ ଖାଏ ଯୋଗଧାନ୍ ବରେ ଦଗକା ନାମ୍ ଉଗ୍‌ର୍‌କେଲୁ ।'

ନଦୀ କହିଲା 'ତୁମେ କଣ ଭୂତ ନିକାଡ଼ିବାକୁ ଖାଉଛ ନା ଭୂଖାଡ଼ିବାକୁ ଖାଉଛ ?' ବାବାଜୀ ମହାରାଜ ଚିମଟାଧର ଗୋଡ଼ାଇବାରୁ ନଦୀ ଚମ୍ପଟ୍ ଦେଲା । ପଳା ବେଳେ ବୋଲି ବୋଲି ଗଲା—
'ଭଙ୍ଗ ଖାଏ ଉଷଲଯାଏ, ପଙ୍କରେ ଦେହ ଘୋଷାଡ଼୍‌କେଲୁ ।'

ଅମ୍ଭେମାନେ ମଧ୍ୟ ସେମାନଙ୍କ ନିକଟରୁ ପ୍ରସ୍ଥାନ କଲୁଁ ।



## ସପ୍ତମ ସନ୍ଧ୍ୟା ।୦

ମର୍ଦ୍ଦରାଜେ ଇତିମଧ୍ୟରେ କଲିକତା ଯାଇ ତିନିବାର ଫେରି ଆସି ଅଛନ୍ତି । କିନ୍ତୁ ଆଜ ସେ ପୂର୍ବର ମର୍ଦ୍ଦରାଜେ ନୁହନ୍ତି । ଆଜି ସେ 'ଶ୍ରୀଯୁକ୍ତ ରାମଚନ୍ଦ୍ର ମର୍ଦ୍ଦରାଜ ବି. ଏ. । ବି. ଏ. ପାଶ୍ କରି କଲିକତାରେ 'ବଡ଼ ଓକିଲାତି' କ୍ଲାସରେ ଭର୍ତ୍ତି ହୋଇ ପୂଜା ଛୁଟିରେ ଗ୍ରାମକୁ ଆସିଅଛନ୍ତି ।

ମୁକ୍ତ୍ୟାର ବାବୁ (ପ୍ରଥମ ସନ୍ଧ୍ୟାରେ ଯେଉଁ ମୁକ୍ତ୍ୟାର ବାବୁ ଉପସ୍ଥିତ ଥିଲେ ଏ ସେହି; ଏହାଙ୍କୁ ଗ୍ରାମର ଦ୍ୱିତୀୟଧନ୍ୟ ଭାଗୀରଥି ସାମନ୍ତରାୟ ମୁକ୍ତ୍ୟାର ବୋଲି ଭ୍ରମ କରିବେ ନାହିଁ), ମନ୍ତ୍ରରାମ, ମହାଜନ ସାହୁ, ପୁଲିସ ଗଡଟର କନେଷ୍ଟବଲ କାଶୀ ବାବୁ ( ଗ୍ରାମରେ ଜମାଦାର ବାବୁ ବୋଲି ଖ୍ୟାତ ), ମାଷ୍ଟର ମହାଶୟ, ଗ୍ରାମର ଦଣ୍ଡାର୍ଜ୍ଜନ ଅଖଡ଼ା ଗୁରୁ (ଆଖଡ଼ା ରସିକର ବର୍ତ୍ତିନାଟା ତ ଅବଶ୍ୟ ଆପଣଙ୍କର ଜାଣି ରଖିବାର ଉଚିତ । ସଂକ୍ଷେପରେ ଶୁଣନ୍ତୁ— ସଭାବାଳ, ପାଟେଲ ଗାମୁଛା, ବୈତ୍ୟଙ୍ଗୀବାନ-ବାସିତ ଯଷ୍ଟିବର୍ଦ୍ଧିତ ଓ ସ୍କନ୍ଦିତ କେଶ-ଗୁଚ୍ଛ, ରୁପା ଚୁଣ୍ଡିଲଗା ପିତ୍ତଳ ବଟୁଆ, ଠସା କୋଳ, ରୁପା ମୁଦି, ଅନନ୍ତଜଡ଼ା, ଖଦର ଟୋପା, ସିନ୍ଦୁରକଳ, ସୁନାକଣ୍ଠିଯୁକ୍ତ ହାତର ମାଳ । ଏ ତ ନମୁନା ଅନୁସାରେ ଯଥା ତଥା । ଏହାଛଡ଼ା ଗୁରୁଙ୍କର କେତେକ ବ୍ୟକ୍ତିଗତ ବିଶେଷତ୍ୱ ଅଛି । ଦକ୍ଷିଣ ବାହୁରେ ମାଳେ ତେଉଁଟିଆ, ଏଠାର ପ୍ରସିଦ୍ଧ 'ଗୁଣୀ' । "ଗୁଣୀ ଗୁଣଂ ବେତ୍ତି ନ ବେତ୍ତି ନିର୍ଗୁଣଃ" ଏ ସେପରି ଗୁଣୀ ନୁହନ୍ତି । ଏହାଙ୍କର ଭୂତ, ଡାହାଣୀ, ମନ୍ତ୍ର ଯନ୍ତ୍ର ଇତ୍ୟାଦି ଗାରଡ଼ ବିଦ୍ୟା ସଙ୍ଗେ ବେଶ୍ ପରିଚୟ; ଗ୍ରାମରେ ଯେତେ ଲୋକଙ୍କୁ ଡାହାଣୀ ଲାଗେ, ଏ ନ ଥିଲେ ପ୍ରାୟ ସେମାନଙ୍କ ମଧ୍ୟରୁ ଶତକଡ଼ା ୧୦୦ ବଞ୍ଚୁ ଥାନ୍ତେ କି ନାହିଁ ସନ୍ଦେହ । ଅମ ଗ୍ରାମର ଭାପୁ ଗହିତ ଦରକୁ କିଏ 'ଘାର' ପେଟିଥିଲେ; ଗୁରୁ ବସୁଷ

ବନ୍ଧନ ପରିଣାମ କରି ଗଣ୍ଡିତ ପାରୁ 'ଜ୍ୱର' ଛଡ଼ାଇ ଦେଲେ । ଗଣ୍ଡିତର ଦେନା ପୁଅ ଧରନ୍ତର, କିନ୍ତୁ ଦେନାପୁଅ ଯାଙ୍କ କଳକତାରେ ଗୃହେର କରି ୨।୩ ବର୍ଷରେ ଥରେ ଘରକୁ ଆସନ୍ତି । ଗଣ୍ଡିତ ବାଂସର ଘରେ 'ଜ୍ୱର' ଲାଗିବାରୁ ଗଣ୍ଡିତ ବୁଢ଼ା ଅତି ଅସ୍ତ ବ୍ୟସ୍ତ ହୋଇ ଯାଇଥିଲେ, କିନ୍ତୁ ଏ ଗୁରୁ ପାଞ୍ଚ ସାତ ଦିନ ମଧ୍ୟରେ 'ଜ୍ୱର' ଛଡ଼ାଇଦେଲେ । ଗଣ୍ଡିତ ବୁଢ଼ା ଗୁରୁଙ୍କ ସଙ୍ଗେ ସେହି ଦିନଠାରୁ ଧର୍ମ ବାପ ବସିଛି । ଗ୍ରାମର ଯେବେ କାହାର ଗାଈ ବଗିଡ଼ିଲା କିମ୍ବା ପିଠା ନ ହିଞ୍ଜିଲା କିମ୍ବା କାହାକୁ ଦିଏ ବାଣ ମାରିଲା, ( ବାଣ ମାରିଲା ଅର୍ଥ ଆତସବାଜି କରି ବସିବେ ନାହିଁ । ସେପ୍ରକାର ବାଣ ମାରିବାଦ୍ୱାରା କାହାର କିଛି ଅନିଷ୍ଟ ହେଲେ ସେଥିନିମନ୍ତେ ଥାନା ଓ ଫଉଜଦାରି 'କଚେରି ଥୁଆ । ଦେଖିଲେ ନାହିଁ ସେଦିନ ସହରରଛମାମ୍ ବାଣମରା ଏକ ମକଦ୍ଦମାରେ କଇଦ ହୋଇଗଲା । ଏ ବାଣମରା କେଉଁଠି ମକଦ୍ଦମା ନାହିଁ କି ପୁଲିସ୍ ନାହିଁ । ) ତେବେ ଏ ଗୁରୁ ସବୁ ଅର୍ଥରେ ଶୁଣିଲେ ପୁଲିସ ଦଣ୍ଡ ବିଲମ୍ବ ନ କରି ଘଟଣା ସ୍ଥଳରେ ପହଞ୍ଚି ସବୁ ଠିକ୍ କରି ଦେଇ ଆସନ୍ତି । ସେଥିପାଇଁ ପରା ପଣ୍ଡିତ ମହାଶୟ କହନ୍ତି 'ପରୋପକାରାୟ ସତାଂ ବିଭୂତୟଃ' । ଗ୍ରାମର ଦୁଇ ତିନୋଟି ବନ୍ଧ୍ୟା ସ୍ତ୍ରୀଙ୍କୁ ମନ୍ତ୍ର ଯନ୍ତ୍ର ଓ ଔଷଧ ବଳରେ ଉତ୍ପାଦିକା ଶକ୍ତି ମଧ୍ୟ ଦେଇ ଥିବାର ଆମ୍ଭେମାନେ ଅକାଟ୍ୟ ଯୁକ୍ତି ଦେଖାଇପାରୁଁ । ଗୁରୁଙ୍କ ଅନ୍ତେ ଗ୍ରାମଟି କପରି ଚଳିବ, ଗ୍ରାମର ବୃଦ୍ଧ ଓ ବିଶେଷତଃ ସ୍ତ୍ରୀମଣ୍ଡଳରେ ଭାରି ଭାବନା । ଅବଶ୍ୟ ଗୁରୁ ଏ ଗ୍ରାମବାସୀ ନୁହନ୍ତି, ଦୁଇ ବର୍ଷ ହେଲା ଏଠାରେ ସର୍କାରଙ୍କ ଅଖଡ଼ାର ଗୁରୁ ପଦରେ ନିଯୁକ୍ତ ହୋଇ ଅଛନ୍ତି । ଆବାଳବୃଦ୍ଧବନିତା ସମସ୍ତଙ୍କର ଏହାଙ୍କ ପ୍ରତି ସ୍ନେହ; ସମସ୍ତଙ୍କ ଗୃହ ଗୁରୁଙ୍କ ଅବାରିତ-ଦ୍ୱାର । ଆମ୍ଭେମାନେ ମଧ୍ୟ ଗୁରୁଙ୍କୁ ଭକ୍ତି କରୁଁ, ବିଶେଷତଃ 'ଖୋରଯା ଉପଦ୍ରବରୁ ପାଳ ଶଳାକୁ ନମସ୍କାର' । ଆମ୍ଭମାନଙ୍କ ଗ୍ରାମର ଅଧିକାଂଶ ଶିକ୍ଷିତଯୁବକଙ୍କର ଗୁରୁଙ୍କ ପ୍ରତି ଗୋଟାଏ

ଅନ୍ତରର ଘୃଣା । କିନ୍ତୁ ଜାଣିର ! ଯେବେ କେହି କଥା କହି ଗୁରୁଙ୍କୁ ଚଟାଇଦିଅ ଦେବେ ତେବେ ସ୍ତ୍ରୀମହଲରେ ହୁଲସ୍ଥୁଲ ଲାଗିଯିବ । ସ୍ତ୍ରୀମାନଙ୍କର ଧାରଣା ଯେ ଗୁରୁ ହାତ ଧରିଲେ ଘଣ୍ଟାକେ ଗ୍ରାମକୁ ଉତ୍ସନ୍ନ କରି ଦେଇ ପାରନ୍ତି । ଯୁବକମାନେ ନିତାନ୍ତ ଅନୁରୋଧରେ ପଡ଼ି ଖାଟି ବନ୍ଦ କରି ରହନ୍ତି । ଏ ଗ୍ରାମର ଜମିଦାରଙ୍କ ପୁଅ ଗୁରୁଙ୍କୁ ଦିନେ ଗାଳି ଦେଇଥିଲେ, ତହିଁ ଅରଦିନ ଜମିଦାରଙ୍କ ଘରେ ଡାକବୋବାଳି ପଡ଼ିଗଲା; ପୁଅଟାରୁ ରକ୍ତ ବାନ୍ତି ହେଲା; ସୁଯୋଗକୁ ଗୁରୁଙ୍କଠାରୁ ହାତପାଣି ନେଲାରୁ ରକ୍ତବାନ୍ତି ବନ୍ଦ ହୋଇ ପୁଅ ବଞ୍ଚିଲା । ମୁଁ ଜାଣେ ଯେ ଯୁବକମାନେ ଗୁରୁଙ୍କ ପର ଗ୍ରାମରେ ସମ୍ମାନ ନ ପାଇବାରୁ ଗୁରୁଙ୍କୁ ସହି ନ ପାରି ନାନାଦ ଅପବାଦ ଦିଅନ୍ତି । କିନ୍ତୁ ମୁଁ ଧୀରଚିତ୍ତ ସ୍ଥିର-ବୁଦ୍ଧିରେ, ବିନା କାହାର ଜୋର ଜୁଲୁମ ବଳାତ୍କାରରେ, ପରୀକ୍ଷାରେ ନ ପଡ଼ି, ମନସ୍ତତ୍ତ୍ୱରେ କହୁଛି ଯେ ଗୁରୁ ଜଣେ ଅଦର୍ଶ ମନୁଷ୍ୟ । ଅନେକ ସଙ୍କୀର୍ତ୍ତନ ମଣ୍ଡଳ ଆମ ଗ୍ରାମର ସଙ୍କୀର୍ତ୍ତନ ମଣ୍ଡଳ ସଙ୍ଗେ ପ୍ରତି-ଦ୍ୱନ୍ଦ୍ୱୀ ହୁଅନ୍ତି ! କିନ୍ତୁ ମୃଦଙ୍ଗରେ ହାତ ନ ବାଜୁଣୁ ବିପକ୍ଷ ପକ୍ଷଙ୍କ ମୃଦଙ୍ଗ ଫୁଟା ହୋଇଯାଏ, କାହାର କଣ୍ଠ ବସି ଯାଏ, କିଏ ରକ୍ତ ବାନ୍ତି କରେ, ସମସ୍ତେ ଏହିପରି ପରାସ୍ତ ହୁଅନ୍ତି । ଗୁରୁ କହନ୍ତି ସେ ପରୋ-ପକାର କରିବେ ବୋଲି 'ଗୁଣୀ' ଶିଖିଛନ୍ତି । ତେବେ କାହାକୁ ଅପଣା 'ବଶ କରିବାକୁ' ପଦେ ଅଧେ ଏଣୁ ତେଣୁ ଶିଖିଛନ୍ତି । ଅଧିକ ଲେଖିଲେ ଗୋଟାଏ ପୋଥି ହୋଇଯିବ । ଅତଏବ ପଣ୍ଡିତ ମହାଶୟଙ୍କ କଥାରେ 'ବହୁନାଙ୍କ' ବା 'ଅଲମତିବିସ୍ତରେଣ' । ) ପଣ୍ଡିତ ମହାଶୟ, ଜମିଦାରଙ୍କ ପୁରୋହିତ 'ମହାପାତ୍ର ଅପଣେ' ଓ ଗ୍ରାମର ଅଉ ଦୁଇ ଗୋଟି ଯୁବକ ଉପସ୍ଥିତ ଅଛନ୍ତି । ସହୃଦୟ ପାଠକ ମହୋଦୟ, ଅପଣ ବିରକ୍ତ ହୁଅନ୍ତୁ ପଛେ ମୋର ନିଜର ଅମ୍ନସ୍ଥାନ ଅପଣ-ମାନଙ୍କ ବିରକ୍ତି ଅପେକ୍ଷା ବେଶି ମୂଲ୍ୟବାନ୍; ଅଜି ଗଡନ୍ମର୍ଦ୍ଦନଙ୍କ ମନ୍ଦିରକୁ ଡାକରେ ସମସ୍ତେ ଉଠି ଅସିଥିଲା, ତା ଉପର ଠିକଣାରେ

ଲେଖାଅଛୁ—ଶ୍ରୀ ବାବୁ ରାମଚନ୍ଦ୍ର ମର୍ଦ୍ଦରାଜ ବି. ଏ.—ଏହା ଦେଖି ମୋ ମନରେ ବାବୁଙ୍କର ବିଭବ ଈର୍ଷା ହୋଇଅଛି । ମୁଁ ମଧ୍ୟ ଏଫ୍. ଏ. ପର୍ଯ୍ୟନ୍ତ ପଢ଼ିଥିଲି, କିନ୍ତୁ ଦ୍ୱିତୀୟ ବାର୍ଷିକ ଶ୍ରେଣୀରୁ ପ୍ରମୋଶନ୍ ନ ପାଇଣ ଛଡ଼ାପି । ହେଲେ କଣ ହେବ, ମୋର ଭାଗ୍ୟ ବୃଦ୍ଧି, ମୁଁ ଯେତେବେଳେ ମୋର ଜୀବନୀ କଥା ଲେଖିବେ, ସମସ୍ତ ସମୟରେ ଲେଖିବେ ଯେ ମୁଁ କଷ୍ଟେ ପାଞ୍ଚ ଉଦ୍ୟମରେ ଏଫ୍. ଏ. ପାଶ୍ କରି-ଥାନ୍ତି । ମୁଁ ସିନା ବଟୁଳଅ ବୃଦ୍ଧି କରି ନ ପଢ଼ିଲି । ଅହା ! ଏପରି ସାନ୍ତ୍ୱନା ନ ଥିଲେ କେତେଲୋକଙ୍କ ଅକାଳ ମୃତ୍ୟୁରେ ପଡ଼ୁଥାନ୍ତେ ? ଅତଏବ ଏଫ୍. ଏ. ଉପାଧି ପ୍ରତି ମୋର ଅବଶ୍ୟ ଦାବି ; ଅଧିକାର ଅଛି । ମୁଁ ଆଜଠାରୁ ସ୍ଥିର କଲି ଯେ ମୋ ନାମ 'ଶ୍ରୀ ଦୁର୍ମୁଖ ଶର୍ମା ଏଫ୍. ଏ.,' [ ଅର୍ଥାତ୍ ଅର୍ଦ୍ଧ ଏଫ୍. ଏ. ] ଲେଖିବ । ଅମ୍ଭମାନଙ୍କ ପଦର ସାର୍ଟିଫିକେଟ୍ ଅପେକ୍ଷା ଢେର ମହତ୍ତର ।

ଆଜି ଟୁଙ୍ଗୀରେ ଏମାନେ ସମସ୍ତେ ଓ ଶ୍ରୀ ଦୁର୍ମୁଖ ଶର୍ମା ଏଫ୍. ଏ., ଉପସ୍ଥିତ ଅଛୁଁ । ଜମାଦାର ବାବୁଙ୍କ ପ୍ରସ୍ତାବ ଓ ଅନୁରୋଧ ଅନୁସାରେ ଆଜି ଟୁଙ୍ଗୀରେ 'ଭାଙ୍ଗ' ପ୍ରସ୍ତୁତ ହୋଇଥିଲା; ସମସ୍ତେ ଅଳ୍ପ ବହୁତ ପିଇ ପକାଇ ଅଛନ୍ତି । ମନ୍ତ୍ରୀରାମ ମଧ୍ୟ ଆଜି ଭାଙ୍ଗ ନିଶାରେ ଚୂର ।

ଜମିଦାରଙ୍କ ଘରେ ଆଜି ସତ୍ୟନାରାୟଣ ପୂଜା (ଠିଆ ପାଲି ନୁହେ, ପୋଥି ପାଲା) ହେବ । ସେଥି ନିମନ୍ତେ ଅମ୍ଭେମାନେ ସମସ୍ତେ ଆମନ୍ତ୍ରିତ । ଜମିଦାର ବଡ଼ ଲୋକ, ବଡ଼ ଲୋକଙ୍କର ବଡ଼ କଥା, ପ୍ରସାଦ ପାଇଁ ଯାଉଁ ଶତ ଶେଷ । ଏପରି ସ୍ଥଳରେ ଆଜି ଅମ୍ଭମାନଙ୍କ ଟୁଙ୍ଗୀରେ ଅନେକ ସମୟ ବସିବାରୁ ହେଲା ଓ ନିଶା ଜୋରରେ କର୍ପୂର ଚିତ୍ତରେ ଅମ୍ଭେମାନେ ଗଳ୍ପ କରିବାକୁ ଆରମ୍ଭ କଲୁଁ । ମୁଁ ମନେ ମନେ ମାଦକ ଦେବଙ୍କର ସ୍ତବ ଆରମ୍ଭ କଲି:—"ହେ ପରବ୍ରହ୍ମରେ ମାଦକ ଦେବ !

ଯେ ତୁମ୍ଭର ଭକ୍ତ ନୁହେଁ ସେ ମନୁଷ୍ୟ ନୁହେଁ । ହେ ଭକ୍ତବାଞ୍ଛା-ବ୍ୟାପୃତ, ହେ କଳ୍ପତରୁ! ତୁମ୍ଭ ଭକ୍ତର ଅସାଧ୍ୟ କିଛି ନାହିଁ । ମୂକଂ କରୋତି ବାଚାଳଂ; ପଙ୍ଗୁ ଲଙ୍ଘୟତେ ଗିରିଂ । ଯତ୍କୃପାତମହଂ ବନ୍ଦେ ପରମାନନ୍ଦ ମାଦବ । ( ପୂର୍ବକାଳରେ ଛାପାଖାନା ଥିଲେ ବୋଧହୁଏ ଏ ଭ୍ରମ ସଂଶୋଧିତ ହୋଇ ଥାନ୍ତା । ଭାଗବତପ୍ରଣେତା ମାଦବ ଲେଖିବାକୁ ଯାଇ ମାଧବ ଲେଖି ପକାଇଲେ । ଛାପାଖାନା ଥିଲେ ଆଗେ କମ୍ପୋଜ (Compose) ହୋଇଥାନ୍ତା, ଆଗେ ଗାଲି ପ୍ରୁଫ୍ [Galley proof] ଦିଆ ଯାଇ ଥାନ୍ତା, ଆଗେ ପେଜ୍ ପ୍ରୁଫ୍ [Page proof] ଦିଆ ଯାଇ ଥାନ୍ତା, ସେଥିରେ ମନ ବୋଧ ନ ହେଲେ ଶେଷକୁ ( final proof ) ଶେଷ ପ୍ରୁଫ୍ ଦିଆ ଯାଇଥାନ୍ତା । ଏଥିରେ ମଧ୍ୟ ମନ ନ ମାନିଲେ ପୁସ୍ତକ ଛପା ହେବା ପରେ ପୁସ୍ତକରେ ଗୋଟିଏ ଶୁଦ୍ଧିପତ୍ର ମଧ୍ୟ ହୋଇ ଛାପାଖାନାର ଦୋଷ ଧରା ଯାଇ ଆପଣା ଉପରୁ ଦାୟିତ୍ୱଟା ବା କନାଟା ଖସି ଥାନ୍ତା । ଏବେ ଆଉ ସଂଶୋଧିତ ହୋଇଥିଲେ କି ଭଲ ଥାନ୍ତା ? କିନ୍ତୁ ତାହା ନ ହୋଇ ଥିବାରୁ ତାଳପତ୍ରରେ ଲେଖୁ ଲେଖୁ ଗଣ୍ଠେଇବାରେ ଭୋଳ ବ୍ୟାସଦେବ କାହିଁ ଛିଡ଼ି ଯାଇ ଅର୍ଥାତ୍ 'ଦ'ର ଉପରଭାଗ ଓ 'ବ'ର ଅଙ୍କୁଶୀ ଛିଡ଼ି ଯାଇ 'ମାଦବ'କୁ 'ମାଧବ' କରି ଗଲେ ଓ ତାହା ଚିରସ୍ଥାୟୀ ହୋଇ ରହିଗଲା ! ଶେଷଫଳ ଏହି ହେଲା ଯେ ମାଦବ ହେବ ନିଜର ପ୍ରକୃତି ହରାଇଲେ । ) ହେ ସନ୍ତାପହାରୀ ଦେବଦେବ ! ତୁମ୍ଭର ଦାସ ଏଠା ସୁଖୀ । ଲକ୍ଷ୍ମୀ ମାଧବଙ୍କର ଅର୍ଦ୍ଧାଙ୍ଗ; ତୁମ୍ଭେ ଏ ଅଂଶରେ ମାଧବଙ୍କୁ ଜିଣିଅଛ । ଅ-ପୂର୍ବ ଲକ୍ଷ୍ମୀ(ଅଲକ୍ଷ୍ମୀ) ତୁମ୍ଭର ଅଙ୍କଗତା, ମାଧବ ଯେପରି ସୁଦାମାଦାରିଦ୍ର୍ୟଭଞ୍ଜନ, ତୁମ୍ଭେ ମଧ୍ୟ ତୁମ୍ଭ ଭକ୍ତର ପର୍ଣ୍ଣକୁଟୀରକୁ ଦିନିକେ ମଧ୍ୟରେ ରମ୍ୟ ହର୍ମ୍ମ୍ୟରେ ପରିଣତ କରିପାର । ତୁମ୍ଭର ଭକ୍ତମାନଙ୍କ ସୃଷ୍ଟି ଅ-ପୂର୍ବ, ରସିକତା ଅ-ପୂର୍ବ ଏବଂ ବାଗ୍ମିତା ଅ-ପୂର୍ବ । ତୁମ୍ଭେ ନିଜେ ଅ-ପୂର୍ବ (ଏଠାରେ ଅର୍ଥ ପଶ୍ଚିମରୁ

ଅନ୍ନଦାତା ।) ସଂସାରରେ କେହି ତୁମ୍ଭର ମାହାତ୍ମ୍ୟଙ୍କୁ ଏତ ପାର ନାହାନ୍ତି । 'ଉଭତା ଦେବୀ' ତୁମ୍ଭର ଅଭିଧା; 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ-ସ୍ତଥୈବ ଭଜାମ୍ୟହଂ' ଏବେ କେଉଁ ପ୍ରକାରେ ତୁମ୍ଭଠାରେ ପ୍ରପନ୍ନ । 'ସର୍ବଦେବନମସ୍କାରଂ କେଶବଂ ପ୍ରତି ଗଚ୍ଛତି' । କେବେ ଧୂମ୍ରରୂପରେ, କେବେ ଜଳରୂପରେ, କେବେ କୁଣ୍ଡରୂପରେ, କେବେ Extract [ସାରାଂଶ] ରୂପରେ କେବେ ରସରୂପରେ ତୁମ୍ଭଙ୍କୁ କଳ୍ପନା କରି ପୂଜା କରୁଅଛନ୍ତି । "ରୁଚୀନାଂ ବୈଚିତ୍ର୍ୟାତ୍ ଋଜୁକୁଟିଳନାନାପଥଜୁଷାଂ ନୃଣାମେକୋ ଗମ୍ୟଃ ତ୍ୱମସି ପୟସାମର୍ଣ୍ଣବଇବ ।" ଦେବାଧିଦେବ ! ସନ୍ଦିହାନ ହୁଅ ନା; ତୁମ୍ଭର ଭକ୍ତ-ଗଣ ଏକାଶ୍ରେଣୀର । 'କ୍ଷିତ୍ୟପ୍ ତେଜ ମରୁତ୍ ବ୍ୟୋମ' ତୁମ୍ଭେ ସବୁ ରୂପରେ ବିରାଜିତ । ତୁମ୍ଭର ବାଜା ଧରଲେ ଲୋକର ସମ୍ମାନ ଅପେ; ସ୍ଥାନାସ୍ଥାନ, ପାତ୍ରାପାତ୍ର, ବାଚ୍ୟାବାଚ୍ୟ, ଜ୍ଞାନାଜ୍ଞାନ ବିବେକାବିବେକ କୌଣସି ପ୍ରଭେଦ ରହେ ନାହିଁ । ଯାହା କଠୋର ତପସ୍ୟା କରି ମୁନି ଋଷିମାନେ ପାଇ ନାହାନ୍ତି, ତୁଚ୍ଛ ପଇସା ଖରଚ କଲେ ଲୋକ ମୁହୂର୍ତ୍ତକେ ତବ ପ୍ରସାଦାତ୍ ସେହି ଉଦାର ପ୍ରବୃତ୍ତିକୁ ପାଇ ପାରେ । ତୁମ୍ଭର ଦେବାଳୟମାନଙ୍କରେ ସବୁ ଦିବସ ଉପାସନାଭିକ୍ଷେରାହ୍ ଅନୁଷ୍ଠିତ । ତୁମ୍ଭର ଭକ୍ତମାନେ ଯେତେବେଳେ ତୁମ୍ଭର ଦେବାଳୟରେ ସ୍ତବ କରୁଥାନ୍ତି, ସେତେବେଳେ ଏହା ସଂସାରରେ 'ବିଶ୍ୱଜନୀନ ମୈତ୍ରୀବ୍ରତ'ର ଜ୍ୱଳନ୍ତ ଉଦାହରଣ ମିଳେ । ତୁମ୍ଭର ଭକ୍ତମାନେ ସଂସାରବିରାଗୀ; ସେମାନଙ୍କର ସ୍ତ୍ରୀପୁତ୍ରଙ୍କଠାରେ ମମତା ନ ଥାଏ । ଜଣେ ଦକା ଗନ୍ଧ ସଂସାରର ଦୁଷ୍କ୍ରିୟା ନେଇ ବ୍ୟସ୍ତ ହେଉଅଛୁ, ସେ ତୁମ୍ଭର ବାଜା ଅଶ୍ରୁପୂର୍ଣ୍ଣ କର୍ଣ୍ଣ ମାତ୍ରକେ ସବୁ ପାସୋରି ପକାଏ । ଧନ୍ୟ ହେ ବିଶ୍ୱମୋହନ ! ତୁମ୍ଭର ପୁଣି ଶତ୍ରୁ ଅଛନ୍ତି; ତୁମ୍ଭର ଧର୍ମର ଧ୍ୱଜା ନଷ୍ଟ କରିବାକୁ କେତେ ଲୋକ ସାହସ ବାନ୍ଧି ଅଛନ୍ତି । କିନ୍ତୁ ପ୍ରାଂଶୁଲଭ୍ୟ ଫଳଲୋଭୀ ବାମନପରି ସେମାନଙ୍କ ଶ୍ରମ ବିଫଳ । 'ଦଳେ ଦଳେ ବିଚ୍ଛି-ଘନ୍ତୋଽପ୍ୟସ୍ତୁ ପୂର୍ଣ୍ଣଃ ଦଳେ ଦଳେ ସାଧକସଙ୍ଗମୋଽସ୍ତୁ ।' ମା ଭୈଃ । ତୁମ୍ଭର

ଏହି ସଂସାରରେ ନାହିଁ ନ ହୋଇ ପାରେ, ବ୍ରହ୍ମାଣ୍ଡ ହିଡ଼ ଯାଇପାରେ ! ଶର ସନ୍ତଙ୍ଗ ଅଗ୍ନି ଶିଖାର କଣ କର ପାରେ ? ତୁମ୍ଭର ସହାୟ ଧନ-ମାନେ, ତୁମ୍ଭର ସହାୟ ସନ୍ଧ୍ୟା ଓ ତୁମ୍ଭର ଭକ୍ତ ମୁଁ ଓ ଅନୁଚରସମୂହଙ୍କ-ମାନେ । ଅଯଥା ଅବମାନନା ଦେଲେ ଅମ୍ଭେମାନେ ତହିଁର ପ୍ରତି-ଶୋଧ ନେବାକୁ ପ୍ରସ୍ତୁତ । ଯେଉଁ ଗ୍ରନ୍ଥର ଆଦ୍ୟ ତୁମ୍ଭେ, ସେ ଗ୍ରନ୍ଥର ଶେଷ ତୁମ୍ଭେ ।——————” ଅହୋ ! ସବୁ ଶେଷ କର ପାରିଲି ନାହିଁ । ମଲ୍ଲିକେ ମୋର ପୂଜାର ସମାପ୍ତି ନ କର ଦେଲେ ।

‘ସ୍ୱାମୀ, ଆଜ କାହିଁକି ଚୁପ୍ ହୋଇ ବସିଛ ? କେତେ ପ୍ରସଙ୍ଗ ପଡ଼ୁ, ଆଜ ଗୌର୍ବାବୁଙ୍କ ଘରେ ସନ୍ଧ୍ୟାନାରାୟଣ ପୂଜା, ପ୍ରସାଦ ମିଳିବାକୁ ବହୁତ ଡେରି ଅଛି । ଏପରି ଚୁପ୍ ହୋଇ ବସିଲେ ସମୟ କାଟିବା କପରି ?’

ମଲ୍ଲିକେର ଆଜ ଅଗ୍ନିରେ ଅହୁତ ପଡ଼ିଛି, ଏବେ ଚ ପାଗଳ, ତା ଉପରେ ସିଦ୍ଧି:—

‘ପାଳରେ କହିଲି ‘ସତ୍ୟପୀର ତୁମ୍ଭେ କହୁଛ ସନ୍ଧ୍ୟନାରାୟଣ । ‘ସତ୍ୟ-ପୀର ବୋଲେ ବାବା ବାତ୍ରୁ ଭକ୍ତ ଲୋକେ । ତୁମ ନାରାୟଣ କେଉଁ ଦନ ବୁଢ଼ା ଫକୀର ହେଲେ ? ନାହିଁ ମହାପ୍ରଭୁ ବାଙ୍ଗୁଲି ବାନ୍ଧି ବଂଶୀ ଧରି କଦମ୍ବ ମୂଳେ ନିଉଙ୍ଗୀଠାଣୀରେ ଗଡ଼ିବାଙ୍କ ପାଖରେ ଠିଆ ହେବେ, ନାହିଁ ବୁଢ଼ା ଫକୀର ହୋଇ ସିରନୀ ଖାଇ ବୁଲୁଥିବେ । ଅମ ଶ୍ରୀକୃଷ୍ଣ ସିନା ସରଳବଣୀ ଖୋଜୁଥିଲେ, ସେ ତ ସ୍ପଷ୍ଟ ସେର ସିରନୀ ଖୋଜୁଥିଲେ ନାହିଁ ।’

ମୁଁ ମଲ୍ଲିକେ ଓ ଜମାଦାର ହସି ପକାଇଲୁ ।

ମଲ୍ଲିକେ କହିଲେ, ‘ଜମାଦାର ବାବୁ, ଅପଣଙ୍କ ମତ କଣ ? ମଲ୍ଲିକେର କଥା ଶୁଣି ହସ ମାଡ଼େ, କିନ୍ତୁ ବେଳେ ବେଳେ ତାଙ୍କ କାଙ୍କ କଥାମାନ ବାହାର କରେ ।’

ଜମାଦାର—ଅମେ ଜାଣୁ ଯେପରି ଭଗବାନ ଏକ ଠାକୁର, ମହାଦେବ

ଅଉ ବ ଏକ ଠାକୁର, ପାର୍ବତୀ ଏକ, ଦୁର୍ଗା ଏକ, ଲିଙ୍ଗରାଜ ଏକ, ଜଗନ୍ନାଥ ଏକ, ସେହିପରି ସତ୍ୟପୀର ଏକ ଠାକୁର । ଆମ ହିସାବରେ ଲିଙ୍ଗରାଜଙ୍କୁ ଭୋଗ ଦେଲେ ଜଗନ୍ନାଥ ପାଇବେ ନାହିଁ । ସେହିପରି ସତ୍ୟପୀରଙ୍କୁ ଭୋଗ ଦେଲେ ଆଉ ଠାକୁର ପାଇବେ ନାହିଁ ।

ପୁରୋହିତ—ସତ୍ୟନାରାୟଣ ପୂଜାରେ ନାରାୟଣଙ୍କ ମନ୍ତ୍ରରେ ନୈବେଦ୍ୟ ହୁଏ ଓ ମହାନ ପୂଜାରେ ଦୁର୍ଗା ଗଣେଶ ସୂର୍ଯ୍ୟ ଆଦି ଦେବତାଙ୍କୁ ଆବାହନ ହୁଏ । ନୈବେଦ୍ୟ ନାରାୟଣଙ୍କୁ ସମର୍ପଣ ହୁଏ, ତନ୍ନ ସତ୍ୟପୀର ବାବାଙ୍କ ପାଲା ବୋଲାଯାଏ ।

ମହାଜନ ସାହୁ—ପାଲାରେ ଯେଉଁ ରକମ ପଢ଼େ ମେ ଦେଖୁଛି ଅସଲ । ତା ନ ହେଲେ ଲୋକେ ଠିଆପାଲା କରନ୍ତେ କିଆଁ ? ଭୋଗରେ ଖର୍ଚ୍ଚ ହେବ ଆଠ ଅଣା; ଏଣେ ପାଲାବାଲା ନେବେ ସରେ ଟ ୫୯; ଲୋକେ କଣ ବେକୁବ୍, ମିଛେରେ ମିଛେରେ ଏତେ ଟଙ୍କା ଖରଚ କରନ୍ତେ ? ତୁମେ ବୁଝି ନାହିଁ । ସତ୍ୟପୀରଙ୍କ ପାଲା ଅସଲ ।

ମସ୍ତରାମ୍ ହିହିଲ—ଅରେ, ପାଲା କ ଅସଲ ? ପୋଥି ପୂଜାରେ ଭଜନ ଅସଲ, ଠିଆ ପାଲାରେ ଦାଏଣା ଅସଲ । ବଡ଼ ରତ୍ନପଦୀ, ଦାଏଣା ନ ହେଲେ ସେ କ ଠିଆପାଲା ? ନେଳଯୁଦ୍ଧ ହେବ, ବ୍ୟାଘ୍ରଗଧ ହେବ, ଯମକ ହେବ, ତେବେ ସିନା ଯାଉଁ ପାଲା । ପାଲା ରଗଡ ପଡ଼ୁଥିବ, ମଣିରେ ମଣିରେ ଗୋଟାଏ ଗୋଟାଏ ଝଷରସିଆ ରଙ୍ଗଢ଼ଙ୍ଗିଆ ଚଉପଦୀ; ଦାଏଣା ପଡ଼ୁଥିବ, ଲଅଁର ତଳ ମସମସ ହେଉଥିବ, ତେବେ ସିନା ପାଲାର ମଜ଼ଜ । ପାଉଁ ନ ବାଇ ପାଲା ନ ହେଲେ ସେ କି ପାଲା ? ଆମ ରଙ୍ଗଡ଼ାରେ ଥିଲା ସେ ଭଣ୍ଡାର ଟୋକା; ତା ସମାନ କେହି ପାଲା କର ପାରବେ ନାହିଁ । ତାକୁ ମା ସାରଳା ପାଦ ଥେଲେ । ଫିରିଙ୍ଗି ମୁନ୍ସା ତା ପାଲା ଦେଖି ତାକୁ 'ବାଘ ବଳଥର ସିଂହ' ନା' ଦେଇଥିଲା । ଇସ୍କୁଲ ପଢ଼ା ବ ତାକୁ ହାର୍ ଜଣା ଥିଲା । ସବୁଠେଇଁ ପାଲାରେ ଜୈ ହେଲେ । ତାଙ୍କୁ ଗୁଣି ଗାରଡ ହାଟ ନ ଥିଲା । ତା ନା' ଗେଜେଟ୍‌ରେ ଛୁଆ ଛପା ହେଇଥିଲା ।

ମନ୍ତ୍ରୀମ୍ ଏହା କହି 'ଧନ୍ୟ ଲବଣ୍ୟ ସଭେବରରେ ତ ପ୍ରଭୁର' ଗୀତଃ ସ୍ୱର ମାନ ମିଳାଇ ଗାଇବାକୁ ଆରମ୍ଭ କଲା ଓ ଜମାଦାର ବାବୁଙ୍କ ଉପୃରେ ଜେତେ ବକ୍ଷୁରେ ନବୃତ୍ତ ହେଲା ।

ଜମାଦାର କହଲେ—'ଅଚ୍ଛା ପଣ୍ଡିତେ, ସତ୍ୟପୀର ଓ ପଠାଣଙ୍କ ଠାକୁର, ସେ ଅମର ସତ୍ୟନାରାୟଣ କେଉଁ ହେଲେ ?

ପଣ୍ଡିତ ମହାଶୟ—ସମ୍ୟୋକେନ ଚିନ୍ତା କର ଅମ୍ଭେ ସ୍ତିହାନ୍ତ କରି-ଅଛୁଁ ଯେ ସତ୍ୟପୀର ଏବଂ ସତ୍ୟନାରାୟଣ ଏକ ଦେବ ।

ଜମାଦାର— ଯେବେ ଏକ ଦେବତା, ତେବେ 'ନାରାୟଣଙ୍କୁ ନୈବେଦ୍ୟ' ତଥା ଲୋକେ ନ କହି 'ସତ୍ୟପୀର ପାନ୍ନି' କାହିଁକି କହୁଅଛନ୍ତି ?

ମର୍ଦ୍ଦରଜେ—ଜମାଦାର ବାବୁ, ପଣ୍ଡିତ ମହାଶୟ ଯାହା କହିଲେ ତାହା ସତ୍ୟ, ଏଥିରେ ଅମ୍ଭମାନଙ୍କ ଉପାସ୍ୟ ଦେବତା ଏକ । କିନ୍ତୁ ଇତର ଲୋକମାନେ ଭ୍ରାନ୍ତ ଭାବରେ ବୁଝି 'ସତ୍ୟପୀର ପାନ୍ନି' କରନ୍ତି ଓ ମନେ କରନ୍ତି ଯେ ସତ୍ୟପୀର ଓ ନାରାୟଣ ଭିନ୍ନ । ଏଥିରେ ମଧ୍ୟ ଦେହେତେ ଐତିହାସିକ ରହସ୍ୟ ଅଛି । ସତ୍ୟପୀର ପୂଜା ପ୍ରଥା ମୁସଲମାନ ରାଜତ୍ୱ ଛଳ ସ୍ୱରୂପ ହିନ୍ଦୁମାନଙ୍କ ମଧ୍ୟରେ ରହିଅଛି । ମୁସଲମାନ ରାଜତ୍ୱ ସମୟରେ ହିନ୍ଦୁମାନେ ଧର୍ମ ବିଷୟରେ ସ୍ୱାଧୀନ ନ ଥିଲେ । ମୁସଲମାନ ରାଜାମାନଙ୍କୁ ଭୁଷ୍ଟ କରିବା ନିମନ୍ତେ ହିନ୍ଦୁମାନେ ନିଜ ଭଗବାନଙ୍କୁ ସତ୍ୟପୀର ବେଶରେ ପୂଜା କରୁଥିଲେ । କାରଣ ଉକ୍ତ ଭାବାପନ୍ନ ହିନ୍ଦୁମାନେ ବୁଝୁଥିଲେ ଓ ବୁଝୁଅଛନ୍ତି ଯେ ହିନ୍ଦୁ-ମାନଙ୍କର ଭଗବାନ ଓ ମୁସଲମାନମାନଙ୍କର ଅଲ୍ଲା ମଧ୍ୟରେ ପ୍ରଭେଦ ନାହିଁ ଓ 'ଶିରନୀ'ଠାରୁ 'ଅମୃତ ରସାବଳୀ' ପର୍ଯ୍ୟନ୍ତ ଯାବତୀୟ ଦ୍ରବ୍ୟ 'ପତ୍ରଂ ପୁଷ୍ପଂ ଫଳଂ ତୋୟଂ' ଭଗବାନଙ୍କୁ ସମର୍ପଣ କରଯାଇ ପାରେ । ସତ୍ୟପୀର ବୋଲି ଡାକିଲେ ସେ ଶୁଣିବେ, ସତ୍ୟନାରାୟଣ ବୋଲି ଡାକିଲେ ସେ ଶୁଣିବେ । କିନ୍ତୁ ସତ୍ୟପୀର ବୋଲି ଡାକ ଯେବେ

ସଙ୍ଗୀତ ଅତ୍ୟାଚାରରୁ ରକ୍ଷା ମିଳିଲା, ଏଟିଂ ଧର୍ମଭାବର ବ୍ୟାଘାତ ହୋଇଗଲା, କେତେ ଦାନ ଦଣ ? କିନ୍ତୁ ଦେଖନ୍ତୁ, ଦାଅ ଗଡ଼ ଗଡ଼ୁ ଉପରେ ମାରତ ଦେଲା । ଇତର ଲୋକଙ୍କ ହାତରେ ସତ୍ୟପୀର ଓ ନାରାୟଣ ଦୁଇ ବିଭିନ୍ନ ମୂର୍ତ୍ତି ଗଠିତ ହେଲେ । 'ଭ୍ରମରବର ପାଲା' 'ମଦ୍ଦିଗାଜି ପାଲା' 'ବିଦ୍ୟାସୁନ୍ଦର ପାଲା,' ଇତ୍ୟାଦି ଇତର ଲୋକଙ୍କ ସୃଷ୍ଟି । କ୍ରମଶଃ ପାଲା ସଙ୍ଗେ ଦାଣ୍ଡକା, ଚଉପଦୀ ଇତ୍ୟାଦି ବଦ୍ ଭାଷିକତା ଯୁକ୍ତ ହେଲା । ବର୍ତ୍ତମାନ ସମୟକୁ ତାହା ପାଲା ବା 'ଲଢ଼ାଇ ପାଲା' ଏକ ଅଦ୍ଭୁତ ଅପରୂପ ବେଶ ଧାରଣ କରିଅଛି ବା ଅଜ୍ର ମଧ୍ୟ ଅମ୍ଭେମାନେ ଏ ପାଲା ଚବେଇକୁ ବଙ୍ଗ ଦେଶରୁ ଅଣିଅଛୁଁ । 'ପାଲା' ଶବ୍ଦଟି ବଙ୍ଗୀୟ ଓ ପାଲାର ଭାଷା ବଙ୍ଗଳା । ମୁସଲମାନ୍‌ମାନଙ୍କ ପ୍ରଭାବରୁ ସତ୍ୟପୀର ପାଲା ପ୍ରଥମେ ବଙ୍ଗ ଦେଶରେ ସୃଷ୍ଟ ହୋଇ କ୍ରମେ ଓଡ଼ିଶାକୁ ଅସିଅଛି ଓ ବଙ୍ଗଭାଷାନଭିଜ୍ଞ ଓଡ଼ିଆ ପାଲାବାଲାଙ୍କ ମୁଖରେ ବଙ୍ଗଳାଭାଷାର ପାଲା ଓ ତହିଁରେ ସଂଲଗ୍ନ [ରୁଦ୍ରାକ୍ଷ ସଙ୍ଗରେ ସୁନା କଣ୍ଠି ଗୁନ୍ଥିଲା ପରି ] ଓଡ଼ିଆ ଭାଷାର ଦାଣ୍ଡକା, ଚଉପଦୀ, ଯମକ ଓ ମେଘଗୁଞ୍ଜ ଇତ୍ୟାଦି ପୃଥିବୀରେ ଅତୁଳନୀୟ, ଅବର୍ଣ୍ଣନୀୟ ଓ ଅକଥନୀୟ । ଧନ୍ୟରେ ଅମ୍ଭ ଦେଶ ! ଅମ୍ଭ ଦେଶ ଛଡ଼ା ଏପରି ଚାଷ ପୁଣି ଅନ୍ୟ କେଉଁଠାରେ ଏତେ ଅଦ୍ଭୁତ ସ୍ୱାତନ୍ତ୍ର୍ୟ ନାହିଁ । କେବଳ ଯେ ପାଲାବାଲାମାନେ ବଙ୍ଗଳା ଗୀତ ବୋଲିବେ ତାହା ନୁହେଁ, ତହିଁରେ ପୁଣି ମା ସାରଳା ଦଣ୍ଡରେ ବସି ଓଡ଼ିଆ ପାଲାବାଲା-ମାନଙ୍କୁ ବଙ୍ଗଳା ପଦ ଶିଖାଇ ଦେଉଥିବେ । ( ମା ସାରଳା ଓଡ଼ିଆଣୀ; କିନ୍ତୁ ତାଙ୍କ ଭଗିନୀ କାଳିକାଘାଟ କାଳୀଙ୍କ ସଙ୍ଗରେ ଡାକରେ ଚିଠି ପତ୍ର ଚଳୁଥିବାରୁ ଅଧାବଙ୍ଗଳାରେ କଥାବାର୍ତ୍ତା କହି ପାରନ୍ତି ଓ ଭାଷା ଲେଖନ୍ତି । )

ସସ୍ତ୍ରଗମ୍ କହନ୍ତି—ଠିକ ଯେମିତି ଅଧ ଘଡ଼ିରେ ବର୍ଷା ହେଲେ ଧାନ ଜଳରେ ବେଙ୍ଗ ବେଙ୍ଗୁଳି ବୋବାନ୍ତି, ସେମିତି ଶୁଭେ । ଫେର୍ ସେଥିରେ

ହିନ୍ଦୀ ଗୀତ ମିଶୁଥାଏ । ପଶ୍ଚିମରେ [ ଦେଶ ] ଗଜଲ ଭଜା, ଝୁଣ୍ଟି ଭଜା, ଚଣା ଭଜା, ଏକାଠେଇଁ ମିଶି ବଜାରରେ ବିକ୍ରୀ ହୁଏ । ଅସ୍ମ ପାଲାବାଲାଙ୍କ ଗୀତ ମଧ୍ୟ ସେମିତ ଲାଗେ—ଗୋଟିଏ ରୁଟ୍ ଗୋଟିଏ ମୁଟ୍, ଗୋଟିଏଁ ଟାଣ ଗୋଟିଏ ଢିଲା ।

"ଶୁଣ ଶୁଣ ସଭାଜନେ କର ନିବେଦନ
ବାବା କଲ ନିବେଦନ ।
ସତ୍ୟପୀର ବାବାଙ୍କୁ ମୁଁ କରେଛେ ବନ୍ଦନ'

ମନ୍ତ୍ରସମ୍ ଟିଲ୍ଲାର କରି ପାଲା ଆରମ୍ଭ କରିବାକୁ ବସିଲା । ଯେଉ ଥରେ ଜମାଦାର ବାବୁ ଧମକ ଦେବାରୁ ଚୁପ୍ ହେଲା ।

ମୁନ୍ସିଆରଙ୍କର କେତେବେଳେ ସଚେତନ, କେତେବେଳେ ଅଚେତନ ଅବସ୍ଥା । ( ବୋଧୋଦୟ, ବୋଧାଙ୍କୁର ଇତ୍ୟାଦିରେ 'ବସ୍ତୁ ଦୁଇ ଭାଗରେ ବିଭକ୍ତ' କଥାଟା କାଟି 'ବସ୍ତୁ ତିନି ଭାଗରେ ବିଭକ୍ତ' ଲେଖିବାକୁ ହେବ ।—

ସଚେତନ—ଯଥା, ମନ୍ତ୍ରସମ୍
ଅଚେତନ—ଯଥା, ଭାଗବତଟୁଙ୍ଗୀ
ସଚେତନାଚେତନ—ଯଥା, ତନ୍ଦ୍ରା ଦେବୀଙ୍କ କୋଳରେ ଦୋଳାୟମାନ ମୁନ୍ସିଆର ବାବୁ । )

ମୁନ୍ସିଆର ବାବୁ କହିଲେ—ଆମ ହିନ୍ଦୁଙ୍କର କଣ ମୁସଲମାନ ଠାକୁରରେ ବିଶ୍ୱାସ ନାହିଁ ? କାଇପଦାର ପୀରଙ୍କ ମୁଣ୍ଡକାଟ ଦେଖିବାକୁ ହଜାରୁ ହଜାର ଲୋକ ଯାଉଛନ୍ତି । କଦମରସୁଲ ଠାରେ କେତେ ଲୋକ ଯାଇ ମାନୁଛନ୍ତି ଓ ନୂଆ ଲଗାଉଛନ୍ତି । ଯେବେ ମୁସଲମାନ ଠାକୁରଙ୍କର କିଛି କରାମତି ନ ଥାନ୍ତା, ତେବେ କେତେ କଣ ଲୋକଙ୍କ ଏତେ ଦୟା କରନ୍ତେ ? ଅମ ନିଜ କଥାରୁ ଆମେ ବୁଝିନ୍ତୁ । ଆମର ସନ୍ତାନସ୍ପୃହା ହୋଇ ଥିଲା, ତେବେଠେ ଠାକୁରଙ୍କୁ ଦେଖେ ମାନସିକ କଲୁଁ କିଛି ହେଲା ନାହିଁ; ଏଣୁ ଦୁଇ କାଇପଦାଂର କିଛି

ଓଁ ଅସ୍ମୁଷ୍ଟାଂ ଉକ୍ଷେ ମିହାବରୁଣୌ ଦଦ୍ୟାନ
ଯତ୍ରେ ଉଷ୍ଟେକ୍ଷେ ବରୁଣଂ ସଜା ପୁନର୍ଦ୍ଦତ୍ତଃ'

ମୋର ଅଉ ବେଶି ମନେ ନାହିଁ । ବଙ୍ଗଳା ଭାଷାର-ବିଶ୍ୱକୋଷର 'ଅଶ୍ମା' ଶବ୍ଦ ତଳେ ଏହି ସୂକ୍ତଟି ଦେଖିବେ ।

(ମଫସଲରେ ବିଶ୍ୱକୋଷ ମିଳିବା କଥା ଦୂରେ ଥାଉ; ବିଶ୍ୱକୋଷର ନାମ ଶୁଣିବା କଥା ଅସମ୍ଭବ)

ମୁଁ କହିଲି—ସର୍ବଜ୍ଞ ବାବୁ, ଏଠାରେ ଆମ୍ଭେମାନେ 'ବିଶ୍ୱକୋଷ' କେଉଁଠାରୁ ପାଇବୁଁ ? [ସହରରେ ୨।୪ ଜଣ ବଡ଼ଲୋକଙ୍କ ପାଖରେ ଥିବା ମିଳି ପାରେ । କିନ୍ତୁ 'ଅହୋ ! ମୋର ତାହା ସଙ୍ଗେ ବିଶେଷ ଘନିଷ୍ଠତା ନାହିଁ ଓ ବେଳେବେଳେ ଲୋକ ଅନୁଭବରୁ ବୁଝି ପାରୁ ଅଛନ୍ତି ଯେ ମତେ ବହି ଧାର ଦେବା ଯୁକ୍ତିଯୁକ୍ତ ନୁହେ । ପରର ବହି ଦେଖିଲେ ମୋ ପାଟିରୁ ପାଣି ବହେ । ମୁଁ ବହି ନ ପଢ଼େଁ ପଛକେ ବହି ପରଠାରୁ ଆଣି ଆପଣା ଘରେ ସଜାଇ ରଖିବାକୁ ମତେ ଭଲ ଲାଗେ । ଆଉ ମଧ୍ୟ ପରର ପୁସ୍ତକକୁ ଦଖଲ ସ୍ୱତ୍ୱ ଅନୁସାରେ ନିଜସ୍ୱ କରିବାର ସୁବିଧା ହେଉ । ଯେଉଁ ଯେଉଁ ପୁସ୍ତକାଧିକାରୀମାନେ ପୂର୍ବ ଜନ୍ମ ତପସ୍ୟାବଳରେ ମୋଠାରୁ ବହି ଫେରସ୍ତ ପାଇଅଛନ୍ତି, ସେମାନେ ବହି-ମାନଙ୍କର ପ୍ରତ୍ୟେକ ପୃଷ୍ଠାରେ ମୁଁ କିମ୍ବା ଘରର ପିଲାମାନେ ବା 'ଆମ ଘରଅନ୍ତେ' ପୁସ୍ତକ ବ୍ୟବହାର କରିଥିବାର ସ୍ପଷ୍ଟ ଚିହ୍ନମାନ ଦେଖିଥିବେ । ଚକ୍ଷୁଲଜ୍ଜା ଏତ ମତେ କେହି ମୁହଁରେ ମନା କରି ପାରନ୍ତି ନାହିଁ, କିନ୍ତୁ ମୁଁ ମାଗିଲେ ବହି ନାହିଁ ବା କାଏ ନେଇଛନ୍ତି ଏପରି ଛଳନାରେ ମତେ ଭଣ୍ଡନ୍ତି । ] ଅତଏବ 'ଅଶ୍ମାଙ୍କ ସୂକ୍ତ'ଟି ଦେଖିବାର ଆଶା ଆମ୍ଭମାନଙ୍କ ପକ୍ଷରେ ଦୁରାଶା ।

ସର୍ବଜ୍ଞ—ବିଶ୍ୱକୋଷରୁ ସେ ସୂକ୍ତଟି ମୁଁ ଲେଖି ଆଣିଥିଲି । ମୋ bundle ( କାଗଜ ପତ୍ର ) ଖୋଲିଲେ ସେ କାଗଜ ମିଳିବ । ମୁଁ ଆପଣଙ୍କୁ ପରେ ଦେଖାଇବି ।

୪। ସର୍ବଶେଷେ ତହିଁ ଅଉ ଦଳ ଯେ କାଗଜ ଖଣ୍ଡକ ମଧେ ଦେଉ ଥିଲେ ଓ ତହିଁରେ ନିମ୍ନଲିଖିତ ଶ୍ଲୋକଗୁଡ଼ିକ ଲେଖା ଥିବାର ଦେଖିଲି:—

'ଅସ୍ତ୍ର'—

ଓଁ ଅପ୍ସ୍ୱାଂ ତସ୍ମୈ ମିତ୍ରାବରୁଣୋଦବ୍ୟାନ ଯଚ୍ଛେ ।
ତସ୍ମୈ ବରୁଣଂ ରଜା ପୁନର୍ଦ୍ଦୁଃ ।
ତପ୍ସ୍ୱମି ମିତ୍ରୋ ଚକ୍ଷ୍ୱାଂ ତସ୍ମୈବ
ତସ୍ମାଲ୍ଲଂ ବରୁଣୋ ମିତ୍ରୋ ଦେବକାମାଃ
ଦେବାବାଉମିତ୍ରୋ ଦେବାରମିତ୍ରୋ ମାତାପିତୃତ୍ରାଃ ।
ଅସ୍ମୋଜ୍ୟୋଷ୍ଟଂଶ୍ରେଷ୍ଠଂ ପ୍ରଥମଂ ପୂର୍ତ୍ତିଂ ବ୍ରାହ୍ମଣସ୍ୟାଂ
ଅସ୍ତ୍ରୋ ଉପରମନ୍ଦସଦୋରଳଂ ବରସ୍ୟ ଅସ୍ତ୍ରୋ
ଅସ୍ତାଂ ଅଦସ୍ତାବୃକମେବଳଂ ।
ଅସ୍ତ୍ରାଂ ବୃକଂ ନଖାତଳଂ ।
ଅସ୍ତ୍ରୋ ଯକ୍ଷ୍ମେନ ହ୍ନିଷକ୍ତୁଭୂଃ, ଅସ୍ତ୍ରା
ସୂର୍ଯ୍ୟଚନ୍ଦ୍ର ସର୍ବନକ୍ଷତ୍ରାଃ, ଅସ୍ତ୍ରୋ ଗ୍ରହାଣାଂ
ସର୍ବଦ୍ୟା ଉନ୍ମାପ୍ତ ପୂର୍ବଂ ମାପ୍ୟ ପରମନ୍ତ୍ର
ଅନ୍ତରୀକ୍ଷାଃ, ଅସ୍ତ୍ରୋ ପୃଥିବ୍ୟା ଅନ୍ତରୀକ୍ଷଂ
ବହୁରୂପଂ ଦଦ୍ୟାନି ଯତ୍ରେ, ତସ୍ମୈଲ
ବରୁଣୋ ରଜା ପୁନର୍ଦ୍ଦୁଃ ।
ତସ୍ମାତବର ତସ୍ମାତବର ତସ୍ମଲେଦ
ତସ୍ମାତ୍ରାଃ ତସ୍ମା ତସ୍ମାତ୍ର ଅନାଦି—
ସ୍ୱରୂପା ଅଥର୍ବଶୀର୍ଷାଖ୍ୟାଂ ହ୍ରୂଂ ହ୍ରୀଂ
ଜନାନ୍ ପଶୂନ୍ ବିକାନ୍ କଳେବରାନ୍
ଅସ୍ତ୍ରଂ ହୁରୁ ହୁରୁ ଫଟ୍ ।
ଅସ୍ତ୍ରଚକ୍ରଧାରିଣୀଂ ହ୍ରୂଂ ଅସ୍ତ୍ରୋଉଦ୍ଭୂ



ମତ୍ତମାନବଈଂ ବରସ୍ୟ ଅନ୍ତେ।
ଅନ୍ତାଂ ଘଣ୍ଟକେନ୍ଦ୍ରଘଣ୍ଟକଃ । )"

ପଣ୍ଡିତ ମହାଶୟ ପୁଣ୍ଟି ପ୍ରଥମ ପୃଷ୍ଠ ଯାଉ ଶୁଣ୍ଡି ଓ ବଣହୋଟରେ କାମ ଶୁଣି:—

"ଅମୁନକମାନଙ୍କର ନବକବୋନ୍ମେଷଶାଳୀନୀ ପ୍ରତିଭା (ପଣ୍ଡିତ ମହାଶୟ ଅମରକୋଷରୁ ପାଣି ପଣ ମୁଖସ୍ଥ କରି ଅଛନ୍ତି) ବସ୍ତ୍ରସ୍ତୋ-ଦ୍ଧାଟକା; ଅମୃର ଭୂମିଷ୍ଠାବଧି ଏବଦ୍ଭୂତ ପୁସ୍ତକର କାମଧାମୋଲ୍ଲେଖ ଅମୃର ଶ୍ରୁତଗୋଚରୀଭୂତ ହୋଇ ନ ଥିଲା । ବଏ ଜଣେ ମିଥ୍ୟାରେ ଏତାଦୃଶ ପୁସ୍ତକୋଲ୍ଲେଖ କରିଅଛନ୍ତି । ଏହା ବେଦୋକ୍ତ ପୁସ୍ତ ହୋଇ-ଥିଲେ ଅଦ୍ୟ ପର୍ଯ୍ୟନ୍ତ ଅସ୍ମଦ୍ ଜ୍ଞାନଗୋଚରକୁ ଅବଶ୍ୟ ଅସିବାକୁ ଯୋଗ୍ୟ ହୋଇଥାନ୍ତା । କଳକାଳ ପିଲାଙ୍କ ପ୍ରତି କଛୁ ଅସମ୍ଭବ ନୁହେ । ମନୋ-ଭାବକ କରି ଲେଖନୀ ଧାରଣ କରିବାରେ ଅଲ୍ପଣିଜ ।"

ପଣ୍ଡିତ ମହାଶୟଙ୍କ ମନରୁ ଏ ଅଯଥା ଧାରଣା ଦୂର କରିବାର ପ୍ରୟାସ ବୃଥା ମଣି ମୁଁ ଓ ସର୍ବସଙ୍ଗେ କଛି ଉତ୍ତର ଦେଲୁଁ ନାହିଁ ।

ମନ୍ତ୍ରରମ୍ କହନ୍ତି—ଅରେ ଅଖ୍ୟାଙ୍କୁ ଯର, ଦାଗମ୍ବଣଙ୍କୁ ଯର, ଦ ଦର ପାଦାଦିଙ୍କି ଯର,‧ଦ ଭାଗବତ ଗୋସେଇଁଙ୍କି ଯର, ଖାଇବାକୁ ଭଲ ମାଲ ମିଳନ୍ତେ ହେଲା । ଅଗେ ପିଜା ଖାଇବା କିମ୍ପା ଲୋଗ ହେଉଥିଲା । ଏଣିକି କ୍ରିତାଥମେଲାରେ ଗଞ୍ଜେଇ ଏକା ଲୋଗ ହେଲାଣି । ଜେକାଥଙ୍କୁ ଜେଉଁଲମ ଗଞ୍ଜେଇ ! ଫେର ଦମାହେବେ ଗଲେ ଅପିମ ମଧ ଲୋଗ ହବ । ଗୁଲ (ମଦକ) ମଧ ଲୋଗ ଲାଗିବାକୁ ବେଶି ଦିନ ନାହିଁ । ଖାଲି ବେଳେ ପିଜା ଗଞ୍ଜେଇ ଟାଣିଲେ ଦୋଷ, ଠାକୁରଙ୍କ ବାବା ଯଥ ଠାକୁରଙ୍କ ପ୍ରସାଦ ଗଞ୍ଜେଇ ଯେତେ ଟାଣୁ ଥିଅ। ବାବା ବାପର ମନ୍ଦିରର ଅଛି କେଉଁ ଦଣ୍ଡ କହବ ! କହିଲେ ଠାକୁର ରାଗି ଯିବେ ; ପ୍ରସାଦକୁ ନିନ୍ଦା କଲେ ବଡ଼ ଦୋଷ ।

ଅମ୍ଭେମାନେ ଦେଖିଲୁଁ ଯେ ଅଜ ମନ୍ତ୍ରରମର Bioscope (ଜୀବନ୍ତ-

ଦୂରଦର୍ଶକ ଯନ୍ତ୍ର)ର ଅବସ୍ଥା । ଯେଉଁ କଥାଟି ଧରୁଛ ସେ କଥାର ଚତୁଷ୍ପାର୍ଶ୍ୱ ଏକ ଜୀବନ୍ତ ଚିତ୍ର ଆଙ୍କି ଦେଉଅଛ । ସେଥି ପାଇଁ କବି କହିଅଛନ୍ତି—'There is pleasure in being mad, which none but mad men know.' ବାଉଳା ହେବାର ସୁଖ ବାଉଳା-ମାନେ ଏକା ଜାଣନ୍ତି । ମନେ ମନେ ବିଗ୍‌ଗଲି, ମସ୍ତଗମ୍‌, ତୁ ଏକା ସୁଖୀ; କହାର ପ୍ରକୃତି ମତ ପ୍ରତି ତୋର ଭ୍ରୂକ୍ଷେପ ନାହିଁ । ତୋର ସ୍ୱାଧୀନତାର ଦଶମାଂଶ ମୋର ଥିଲେ ମୁଁ କେତେ ସୁଖୀ ହୋଇ ନ ଥାନ୍ତି । ଅମୁକଙ୍କୁ ଯାଇଲେ ମୋ କଥା ଭଲ ନ ଲାଗିବ, ଯାଇଲେ ଅମୁକ ବିରକ୍ତ ହେବେ, ଅମୁକଙ୍କର ନିନ୍ଦା ସହ୍ୟ କରିବାକୁ ହେବ, ଅମୁକ ଖଣ୍ଡେ ସୁପାରସ୍‌ ଦେବେ ନାହିଁ ପର, ଅମୁକଙ୍କଠାରେ ପାଉଣାଟିକ ବୁଡ଼ିଯିବ ପର, ଏପରି କେତେ ଭୟ କରି ଆମ୍ଭମାନଙ୍କର ମୁହଁ ବନ୍ଦ; ନୋହିଲେ ତୁ ଯାହା ମନରେ ଭାବୁ, ତାହା ପ୍ରକାଶ କରୁ । ପ୍ରକୃତ କଥା କହିଁ:—"ହକ କହେଗା, ବୁରୁ ଦେଖେଗା ର ଦେଖେଗା ।" କବି କହିଛନ୍ତି "ହିତଂ ମନୋହାରି ଚ ଦୁର୍ଲଭଂ ବଚଃ ।"

ଏହି ସମୟରେ ଜମିଦାରଙ୍କ ଘରୁ ପୁରୋହିତଙ୍କୁ ଡାକରା ଆସିଲା—ପୁରୋହିତେ ପୋଥିପୂଜା ଆରମ୍ଭ କରିବାକୁ ଯୋଉଁ, ନାଣ୍ଡ ଇତ୍ୟାଦି ନେଇ ବାହାରିଲେ ଓ ଜମାଦାର ବାବୁ, ପଣ୍ଡିତ ମହାଶୟ, ମହାଜନ ସାହୁ, ଅଖଡ଼ା ଗୁରୁ, ମସ୍ତଗମ୍‌ ଓ ଉପସ୍ଥିତ ହୂଅ ଟୋକାଟି ଯୁବକ ପୋଥିପୂଜା ଶୁଣିବାକୁ ଗଲେ ।

ଟୁଙ୍ଗୀରେ ମୁଁ, ସର୍ବଜ୍ଞ, ମୁକ୍ତ୍ୟାର ବାବୁ ଓ ମାଷ୍ଟର ମହାଶୟ ବାକି ରହିଲୁଁ ।

ମାଷ୍ଟର ମହାଶୟ କହିଲେ—ଉଃ ! ଗୋଟାଏ load (ବୋଝ)ରୁ ରିଲିଫ୍‌ ପାଇଲି । ଜମାଦାର ବାବୁ ଏଠାରୁ ନ ଯିବା ପର୍ଯ୍ୟନ୍ତ ମୋ body (ଶରୀର)ରେ life (ଜୀବନ) ନ ଥିଲା । (ଜମାଦାର ବାବୁ ଗ୍ରାମର ଅପର ପ୍ରାଇମେରୀ ସ୍କୁଲର ମାନେଜିଂ କମିଟିର ମେମ୍ବର ହୋଇ

ଅଛନ୍ତି । ସେଥି କମ୍‌ରେ ଜମାଦାର ବାବୁଙ୍କ ହୁଇ ପୁଅଙ୍କୁ ଏକା ଦରମାରେ ମାଷ୍ଟର ମହାଶୟ ହୁଇ ଓଳ ଘରେ ପଢ଼ାଉବେ । ତାହା ହୋଇ ଯୁବା ଜମାଦାର ବାବୁଙ୍କ ମନ ଲଗିବା ଦୁଃସାଧ୍ୟ; ଜମାଦାରଙ୍କ ପିଲା ଏ ବର୍ଷ ନମ୍ମ ପ୍ରାଇମେରୀ ବୃତ୍ତି ନ ନେଲେ ମାଷ୍ଟର ମହାଶୟଙ୍କ ଦରମା କଟା ଯିବ ବୋଲି ଜମାଦାର ବାବୁ କହୁଅଛନ୍ତି । ଏଥି ଉପରେ ଫେର ଏକପଟୀ, ଦୋପଟୀ, ତେନପଟୀଙ୍କ ପାଖରେ ହାତ ଯୋଡ଼ା, ଅର୍ଦ୍ଦଳୀ କାମ କରିବା କଥା ତ ଉପର କାମ ମାସେ ପଡ଼େବେ ଲାଗିଛି ଜମାଦାର ବାବୁ ଟୁଙ୍ଗୀରେ ଉପସ୍ଥିତ ଥିବା ଯାକେ ମାଷ୍ଟରେ ମୂଢାଟି ପରି ବସି ଥିଲେ । ଜମାଦାରଙ୍କ ପ୍ରସ୍ଥାନ ସଙ୍ଗେ ସଙ୍ଗେ ମାଷ୍ଟର ମହାଶୟଙ୍କ ପ୍ରତି ବାଗ୍‌ଦେବୀ ପ୍ରସନ୍ନା ହେଲେ !)

ମୁଁ କହିଲି—ଆଜ ଅଖଡ଼ା ଗୁରୁଙ୍କୁ ଗୁଣି ଗାରଡ଼ ବସ୍ତ୍ରରେ ପଦେ ଅଧେ ଶୁଣାଇବାର ଇଚ୍ଛା ଥିଲା; କିନ୍ତୁ ଜମାଦାର ବାବୁଙ୍କ ସଙ୍ଗେ ଗୁରୁ ଚାଲିଗଲେ ।

ମାଷ୍ଟର ମହାଶୟ—ମୁଁ ମଧ୍ୟ ତାଙ୍କୁ a bit of my heart (ମୋ ମନ କଥାରୁ ପଦେ ଅଧେ) speak କରି (କହି) ଥାନ୍ତି ।

ସର୍ବଜ୍ଞେ କହିଲେ—ଗୁରୁ ବାଗ୍ରା ଗୁଣି ଗାରଡ଼ ବଳରେ ଏ ଗ୍ରାମରେ ଅଦ୍ଭୁତ । ଦେଉଛେ ଲୋକଙ୍କ ଅଖିରେ ଧୂଳି ପକାଇ ସମ୍ମାନ ପାଉଅଛି । ଆଚ୍ଛା, ସେ କଥା ଆଉ ଦିନେ ହେବ । ଆଜ 'ଭୂଜାସନ୍ଧ୍ୟା-ପଦ୍ଧତି' କଥା କିଛି ଆଲୋଚନା କର ।

ମାଷ୍ଟର—ଘଣ୍ଟି (bell) ବାଜିଲେ, ଜାଣ୍ଡି ବାଲ କୁଟିଲେ, ଛାଳ ମାରିଲେ ପୂଜା ହେଲା । ଅନୁସ୍ୱାର ବିସର୍ଗ ମିଶାଇ ଯୋଖି ଧରି ଥୋଡ଼ା by heart (ମୁଖସ୍ଥ) କରି ନେଲେ ହେଲା ।

ମୁଁ—ଶବରେ ବ ଅଉ ଜୀବନ ଥାଏ । ଜୀବନ ଗଲାରୁ ପୋତି ନ ପକେଇ ଯେତେ ବେଶି ଦିନ ରଖେଇ ରଖିବ; ସେତିକି ବେଶି ଦୁର୍ଗନ୍ଧ ଓ ସଂକ୍ରାମକ ବ୍ୟାଧି ବଢ଼ିବ । ଫିନାଇଲ୍ ଢାଳ, କର୍ପୂର ପୋଡ଼,

ଛାଡ଼ି ହେଲେ ସର୍ବନାଶ । ପିଲାଏ ବ୍ରତ ହେଲାରୁ ବେଦାଧ୍ୟୟନ ତ ଆରମ୍ଭ ହେବା ଦରକାର । ପାଠରେ ତ ବେଦଜ୍ଞାନ କଥା ଲେଶ ନାହିଁ । ଅଧ୍ୟୟନର ଅର୍ଥ ପୋଥିରୁ ଶୁଦ୍ଧ ଅଶୁଦ୍ଧ ମୁଖସ୍ଥ ଓ ନାକବାକ ଧରିବା । ପିଲାଏ ସନ୍ଧ୍ୟା ନ କଲେ ଯେ ପଛକୁ କାରସ୍ଥାନ୍ ହୋଇଯିବେ । କପଟୋନାସ୍ତି ଦୁର୍ଗତିଃ ।

ମୂର୍ଖ୍ୟରେ—ଆଜ ବନ୍ଦ କର । ଟିକିଏ ଆସନ କରିବା (ଆସନ= ଶୟନ) । ଆଜ ଏଷ୍ଟୀ; ଶୀତ ଲୁଗଲାଣି, ଛ ଘଣ୍ଟା ସକାଳୁ ବଜିଲାଣି, ଏ ଅନ୍ଧକାରରେ କିଏ ଘରେ ପହଞ୍ଚିବା । ଏଥର ଭ୍ରମର କଟସ୍-ପ୍ରସଙ୍ଗ ବନ୍ଦ କର । ମୁଁ ମଣ୍ଡଳରୁ ଆସୁଛି । ଅଚିରେ ଦଳେ ସେ କଥା ପଡ଼ିଯିବା ।

ଏହି ସମୟରେ ଗ୍ରାମର ସ୍ୱାନାମା ଅଣ 'ବହିର୍ଦ୍ଦେଶ' କାର୍ଯ୍ୟ ସାରି ଟୁଙ୍ଗୀ ଦ୍ୱାର ବାଟେ ଗୃହକୁ ଫେରୁଥିଲେ । ଅମ୍ଭମାନଙ୍କ ମଧ୍ୟରେ ତାଙ୍କର ମାନ୍ୟ ଲୋକ କେହି ନ ଥିବାରୁ ଦେଖି ଟୁଙ୍ଗୀ ଦ୍ୱାରରେ ଅସି ପହଞ୍ଚିଲେ ଓ ମାଷ୍ଟରଙ୍କୁ ସମ୍ବୋଧନ କରି କହିଲେ:—

"କହେ ମାଷ୍ଟରେ ! ତୁମେ ଯେ ମନ୍ତ୍ରୀ ( ମନ୍ତ୍ରମ୍ ) କୁ କଣ ଶିକ୍ଷିଅ ଦେଉଛ କି ? ସେ ଯାଇ ଅମ ଦାଣ୍ଡରେ ଠିଆ ହୋଇ ଗାଁର ବୁଢ଼ୀଙ୍କି ଦେଖେଇ ଶିଖେଇ କେତେ ଉଲୁଗୁଣା ଦେଉଛି, କେତେ ସମ୍ଭାଳୁଛି । କହୁଛି, ମାଷ୍ଟର ମତେ ଶିଖେଇ ଦେଉଛନ୍ତି । ଧଣ୍ଡସଣ୍ଡ କେତେ କଥା ବକୁଛି, ପୁଣି ଶୁଣି ମୋ ମନ୍ତ୍ରିଅଣୀ ବୋଲନ୍ତି ଏ ଅମାବସ୍ୟା ଦିନ ମତେ ମାନିବାକୁ ନାହିଁ । ବୁଢ଼ୀଙ୍କ ଲେଖାଏଁ ଜଳ କରୁଛି । ମୋ ପୁଅକୁ ମନ୍ତ୍ରା ଅଲେଉଅସ ଭେଣ୍ଡି କରିଦେଲା । ମନ୍ତ୍ରିଅଣୀଙ୍କ ଗୃହ ବଇଷ ହେଲା ଘରକୁ ଆଣିଲିଣି ମୁଁ ଅଟେ ତା କାନ କାଟିଲେ କହିଲ କାହାରୁ ନ ଥିଲା । ଗଲକାଲି ମନ୍ତ୍ରୀ ଅମକୁ ଗାଳି ଦେଲା ଦିନୁ ମୋ ବୋଲନ୍ତି ମତେ ମାନିବାକୁ ନାହିଁ । କାଲି ଟିକିଏ ତାକୁ ମାରି ଛୁଇଁ ଦେଲି ବୋଲି ଗର୍ଜନ କରି ଯାଇ ସାଇ କମ୍ପେଇଲା । ଯେ ଶୁଣୁଛି, ସେ ହସୁଛି, ଛି ଛି କରୁଛି । ଏ କଥା ଶୁଣି ପରେ ଶୃଷ୍ଟି ବାଳ ଛିଣ୍ଡେଇ ମରିବ ।"

ମୁକ୍ତ୍ୟାରେ ଟିକିଏ ଫୁର୍ତ୍ତିରେ କହିଲେ, 'ମାଷ୍ଟର ବାବୁ, ତୁମେ ପରଘର କିଆଁ ଭାଙ୍ଗୁଛ ?'

ମାଷ୍ଟର ବାବୁ ହୀନାମା ଅଧ୍ୟ ଏମା ମୁକ୍ତ୍ୟାରଙ୍କ କଥା କିଛି ନ ବୁଝି ପାଶ ପିଲା ଖାଇ ବସିଲାବେଳେ ଥାଳରୁ ହଗଡ଼ ମାଛଭଜା ଖଣ୍ଡିକ ଝାମ୍ପି ନେଇ ପଳାଇଲେ ପିଲା ବିଚରା ଅବା କାନ୍ଦି ହୋଇ କ୍ଷଣକାଳ ଚାହିଁ ରହିଲା ପରି ମୁହୂର୍ତ୍ତେ କର୍ତ୍ତବ୍ୟଜ୍ଞାନଶୂନ୍ୟ ହୋଇ ମୁକ୍ତ୍ୟାରଙ୍କ ମୁହଁକୁ ଚାହିଁଲେ ।

ମର୍ଦ୍ଦରାଜ—"ମୁକ୍ତ୍ୟାର ବାବୁ, ଏଥିରେ ପର ଘର ଭାଙ୍ଗିବା କଥା କିଛି ନାହିଁ । ଗତ ଥର ସନ୍ଧ୍ୟାବେଳେ ଟୁଙ୍ଗୀରେ ଶାଶୁମାନଙ୍କ ଅତ୍ୟାଚାର କଥା ପଡ଼ିଥିଲା । ମସ୍ତରାମ୍ ବୋଧ ହୁଏ ଗ୍ରାମରେ ସେହି କଥା ଗପ୍ପ କରୁଛି ।

ହୀନାମା ଅଧ୍ୟ—କେଉଁ ଦିନ ମୁଁ ମୋ ବୋହୂକୁ ମାରୁଥିଲି ? ଅବସ୍ଥା ଦେଉଥିଲି ? ( ପାଠକ ମହାଶୟ ! ସ୍ମରଣ ଥିବ କେତେକ୍ଷଣ ପୂର୍ବେ ହୀନାମା ଅଧ୍ୟ ତାଙ୍କ ବୋହୂଠାରେ ହାତ ଛୁଇଁ ଦେବା କଥା ଅସମ୍ପର୍କ ଭାବରେ କହି ପକାଇଛନ୍ତି ) କିଏ ଦେଖିଛ ? ମିଛରେ ମଟେ ମସ୍ତ୍ରା ବୃତ୍ତେଇ ଦେଉଛୁ । ନିର୍ଥଲଗା ସବୁ ବୁଢ଼ୀଙ୍କି ଦେଖେଇ ଶିଖେଇ କେତେ କଥା କହୁଛମ । ତୁମେ କଣ ଆମକୁ ଏତେ 'ନଯାଦଲାର' କରି ଦେଖିଛ ! ଆମ ଅଗ୍ରକୁ ସିନା ଚାହିଁବାକୁ କେହି ନାହିଁ ବୋଲି ଯା କରୁଛ ! ଯାହା ମନକୁ ଆଇଲା କହୁଛ, ଈଶ୍ୱରେ ହାଟୁଳି ବାକୁ ନାହିଁ ! ବୋହୂଯାକ ତୁଳସୀ ଗଛ ହେଲେ, ଆମେ ହେଲୁ ବାଉର ! କି ଅଲକ୍ଷଣ କାଳ ହେଲା । ପଦେ ଅଧେ ଭଲରେ ମନ୍ଦରେ ଆମେ କହିବୁ ନାହିଁ ? ତେବେ ଆଉ ଶାଶୁ ହେଲୁ କିଆଁ ? 'ଯାଖରେ ଶୁଏ, କାନରେ ନୁହେ, ତା କଥା କି ଅଜାଣ୍ଡା ହୁଏ' ? ଆମକୁ ପଚାରୁଛ କିଏ ?

ମୁକ୍ତ୍ୟାରେ କହିଲେ—ମାଷ୍ଟର ବାବୁ ! ହୁସିଅର୍—( ହୀନାମା

ଅଣ୍ଡିଙ୍କୁ ସମ୍ବୋଧନ କରି) ମାଷ୍ଟ୍ରେ, କିଛି ପଚାରିଲ ନାହିଁ । ମୋର ଯେତିକି ଶାସ୍ତ୍ର ଅଛି, ଥରେ ଆମ ସାଙ୍ଗରେ ସହରକୁ ଚାଲ, ନଇଲେ ଆମକୁ ଖଣ୍ଡେ ସୋମ୍‌ବାରବ ଦିଅ । ଅମେ ସମସ୍ତଙ୍କୁ କବାଡ଼ କରି ଦେବା । ଅମେ ବି ଏ କଥା ଆଗରୁ କିଛି କିଛି ଶୁଣିଛୁଁ ! ପିଙ୍ଗଳବୋଡ଼ ୫୦୦ ଫୋ କଣ ନାହିଁ ପଢ଼ ? ତୁମେ ତ ପିଲାଙ୍କୁ ପଢ଼ାଉଛ, ତୁମର ପର ନାଁରେ ମିଥ୍ୟାପବାଦ ଦେବାର ଅବକାଶ ( =ଅବଶ୍ୟକ) କଣ ? ଟୁଙ୍ଗୀରେ ବସି ମଲ୍ଲିକ କଲି ବେଳକୁ ଉଆଉଣ୍ଡ କାର ହେଲା ବେଳର କଣ୍ଟକ ଉପାଡ଼ି ! ଦେଖାହେଲେ ମାମୁଘର ଦେଖି ଆସିଲେ ମିଞ୍ଜାସ୍‌ ଥଣ୍ଡା ହୋଇଯିବ । ଛୁମ କାମରେ ତୁମେ ମାଛ । ପର କଥା କହିବାର ଦରକାର କଣ ?

ମର୍ଦ୍ଦରାଜ କହିଲେ—ମୁନ୍‌ସିଆର ବାବୁ, ଆପଣ କହିଲେ ପର କଥା କହିବାର ଦରକାର କଣ ? କିନ୍ତୁ ମାଷ୍ଟରେ ତ ପର କଥା କହି ନାହାନ୍ତି, ଘର କଥା କହୁଅଛନ୍ତି । ଯେବେ ସେ କଥାରେ କିଛି ମିଛ ଥାଏ, ତେବେ ତାହାର ପ୍ରତିବାଦ କରନ୍ତୁ, ଧମକ . ଦେଉଛନ୍ତି କିଆଁ ? ଦାଣ୍ଡ ଲୋକ କହିଲେ ସହିବେ, କିନ୍ତୁ ଯେବେ ଆପଣା ଭିତରୁ କେହି କହିଲା, ତେବେ ତା ଉପରେ ରାଗ ! 'କାଣୀ ବଗଡ଼ କୁଳୀ ଉପରା ଉପରକୁ ଉଚ୍ଚା' କଥାରେ ଅଛନ୍ତି, 'ସୁନାମୁଦିଆ ହାତରୁ ଟଙ୍କାର ଖାଇଲେ ଗଙ୍ଗାସ୍ନାନର ଫଳ ।' ମାଷ୍ଟର ମହାଶୟ କହି ଦେଲେ ବୋଲି ଏତେ ଡ଼ିଗଣ ! ମୁନ୍‌ସିଆର ବାବୁ, ଆପଣ ବୁଝୁଛନ୍ତି ନାହିଁ ଯେ ଅଦାଲତ କାନୁନ ମୁଣ୍ଡିଆ ବିଶ୍ୱାମିତ୍ର ଆପଣଙ୍କ ଉପରେ ଝାଡ଼ି ଦେଉଛନ୍ତି । ଗାଁରେ ଥରେ ସେ ଦଳର ଟିପ୍ପଣୀ ଦେଖିବେ ଓ ଆପଣଙ୍କ ଅପବାଦ ଦସ୍ତାବିଜ ତା ସଙ୍ଗରେ ମିଳାଇବେ । ଆପଣ ପୋଥିରୁ ଯେଉଁ ନମ୍ବର ବାହାର କରି କଥା କହୁଅଛନ୍ତି, ତାକୁ କାଟିବାର ଅନେକ ବାଟିଆ ନମ୍ବର ଅଛି । ଯେ କାହୁଁରେ ପଶିଥାଏ ସେ ଗୋଡ଼ ଧୋଇବା ଉପାୟ ଆଗରୁ କରିଥାଏ । ଅଦାଲତ୍ ଆପଣଙ୍କର ନୁହେ ବା ଛମାଙ୍କ

ନୂତନ । ଅଧନର ଉଦ୍ଦେଶ୍ୟ ଖୁବ୍ ମହତ୍ତ୍ । ଗୁପ୍ତ କୋଧ ବା ହିଂସା ଚରିତାର୍ଥ କରିବାକୁ କ ଖାତାବାଡ଼ିରେ ଲୁଗା ପକାଇ ବଜିଆ ବୁଲିବା ଉଚିତ ? (ମାଷ୍ଟରେ ଦିନେ ମୁକ୍ତ୍ୟାରଙ୍କ ଧାନ ପୁଅକୁ ପଢ଼ା ନ ଆସିବାରୁ ପାହାରେ ପକାଇଥିଲେ । ମୁକ୍ତ୍ୟାରେ ଅଳ ସୁଯୋଗ ପାଇ ପ୍ରତିଶୋଧ ଦେବାକୁ ବସିଥିଲେ । କିନ୍ତୁ ମର୍ଦ୍ଦରାଜ ସବୁ ବିଗାଡ଼ ଦେଲେ । )

'All's well that ends well' 'ମଧୁରେଣ ସମାପୟେତ୍' ଏ ଉକ୍ତିର ଅନୁସରଣ କରି ମୁଁ ଉଭୟ ପକ୍ଷକୁ ବୋଧ କରି ଯାହା ଅଡ଼ଲୁ ଦ'ପଦ, ତାଙ୍କୁ ଅଡ଼ଲୁ ଦ'ପଦ କହି କ କଥା ମୀମାଂସା (ମୁକ୍ତ୍ୟାରେ କହନ୍ତି, ନମାଂସା) କରି ଦେଲି ଓ 'ଏକଥା ରହିବା' ବୋଲି ସାନାମା ଅଣ୍ଡଲୁ ସାନ୍ତ୍ୱନା ଦେଲାରୁ, ସମସ୍ତେ ଟୁଙ୍ଗୀରୁ ପ୍ରସ୍ଥାନ କରି ଜମିଦାରଙ୍କ 'ପୂଜା'ଠାରେ ଉପସ୍ଥିତ ହେଲୁଁ । କିନ୍ତୁ ମୁକ୍ତ୍ୟାରଙ୍କ 'ମୁଣ୍ଡ ଧରିଛି' ବୋଲି' ମୁକ୍ତ୍ୟାରେ ନିଜ ଗୃହକୁ ଗଲେ । (ମୁଁ ମନେ ମନେ ବିଚାରିଲି ଯେ ଗତ ସନ୍ଧ୍ୟାରେ ମାଷ୍ଟରଙ୍କର ସ୍ୱରଟା ଠିକ୍ ଏ ଗଡ଼ା ଥିଲା । ମସ୍ତବନ୍ତ ତ ପାଗଳ; ତା କଥା ଅଲଗା । 'ଶନୈଃ ପନ୍ଥା ଶନୈଃ କନ୍ଥା, ଶନୈଃ ପର୍ବତଲଙ୍ଘନଂ ।' କୌଣସି କଥା କରିବାକୁ ହେଲେ ଠିକ ଏ ଅନୁଭବରେ କଲେ ତାହାର ଫଳ ଶୀଘ୍ର ଫଳେ । ତ୍ରାନ୍ଧର ଶାଶୁମାନେ ଚିତ୍ତାଗଲେ ଲାଭ ଏତିକି ହେବ ଯେ ବୋହୂମାନଙ୍କ ଉପରେ ଅତ୍ୟାଚାରର ମାତ୍ରା ବଢ଼ିବ, ଦଉଁ ଗଡ଼ୁ ଗଡ଼ୁ ମାନ୍ଦାତାରେ ପରିଣତ ହେବ । ଉଦ୍ଦେଶ୍ୟ ଉତ୍ତମ ଥିଲେ ମଧ୍ୟ ତାହା ପ୍ରକାଶ କରିବାର ପନ୍ଥା ପ୍ରତି ଦୃଷ୍ଟି ରଖିବା ଉଚିତ । )

—ঃ০ঃ—

୮ । 

## ଅଷ୍ଟମ ସନ୍ଧ୍ୟା ।

"ଆହା ! ଗୋଟିଏ ଗୋଟିଏ କ୍ଷୁଦ୍ର କ୍ଷୁଦ୍ର ଘଟଣା ଦେଖିଲେ ବା ଦୁଇ ଏକ ଧାଡ଼ି ପଢ଼ିଲେ ମନରେ କେତେ ପ୍ରକାର ଅତୀତର ସ୍ମୃତି ଜାଗରୂକ ହୁଏ ! ମନୁଷ୍ୟ ପୁନର୍ଜନ୍ମ ଲଭି ଅଳ୍ପ ଥରେ ବାଲ୍ୟାବସ୍ଥା ଲାଭ କରିବାକୁ ଉତ୍କଣ୍ଠିତ ହୁଏ !" ଆଜ ମୋର କନିଷ୍ଠ ଛନ୍ଦମାଳାରୁ

'ଅଶ୍ରୁ ଭଙ୍ଗି ରସ ମଧୁର ପିଇ ବାଳକଗଣ
ବଢ଼ନ୍ତି ଯୌବନେ, ହରଷେ ପୂରିଅଛି ବଦନ ।'

ପଢ଼ୁଥିବାର ଶୁଣି ମୋ ମନ ଅତୀତ ସ୍ମୃତିରେ ପୂର୍ଣ୍ଣ ହୋଇଥିଲା ।" ମହେଶ୍ୱରଙ୍କର ଏହି ଉକ୍ତିଟି ଶୁଣି ମୁଁ ବିମୋହିତ ହୋଇଗଲି ।

ମାଷ୍ଟର ମହାଶୟ କହିଲେ, ମୁଁ ସେଥି ପାଇଁ Cuckoo (କୋକିଳ) ବିଷୟରେ Poem (ପଦ୍ୟ)ଟି ଲେଖିଥିଲି, କିନ୍ତୁ ତାଙ୍କୁ କେହି like (ଆଦର) କଲେ ନାହିଁ ।

ମୁଁ ମନେ ମନେ ବିଚାରିଲି ଯେ ବାଲ୍ୟସ୍ମୃତି କିମ୍ବା ଅତୀତ ସ୍ମୃତିରେ ପୂର୍ଣ୍ଣ ରଚନା ସିନା ଭଲ ଲାଗିବ, କିନ୍ତୁ ମାଷ୍ଟର ମହାଶୟଙ୍କ ଇଂରାଜୀ ମିଶା ଓଡ଼ିଆ ଯମକ ବା କେପରି ଭଲ ଲାଗିବ ?

ଶମ୍ଭର ମିଶ୍ର କହିଲେ—( ଶମ୍ଭର ମିଶ୍ର ଏଥି ପୂର୍ବେ ଆମ୍ଭମାନଙ୍କଠାରୁ ମାଷ୍ଟରଙ୍କ ପଦ୍ୟର ଆନୁସଙ୍ଗିକ ବର୍ଣ୍ଣନା ଶୁଣିଥିଲେ*) ମାଷ୍ଟର ମହାଶୟ !

Full many a flower is bornto blush unseen
And waste its sweetness on the desert air.

ଆପଣଙ୍କ ପଦ୍ୟ ଅନୁବାଦ ନ ହେଉ 'ବନର ମାଳତୀ ପରି ବନେ ଫୁଟି ଝଡ଼ିଲା ।' ମାଷ୍ଟର ମହାଶୟ ! ଆପଣ ମନରେ ଦୁଃଖ କରନ୍ତୁ, କିନ୍ତୁ ମତେ ମନଲାଗି କଥା ଅଟେ ନାହିଁ । ଏପରି ଅନେକ ଲୋକ ଅଛନ୍ତି ଯାହାଙ୍କୁ 'ଅପ୍ରିୟ ସତ୍ୟ' ନ କହିଲେ ସେମାନେ ଆପଣାର ନିର୍ବୁଦ୍ଧିତା ସ୍ୱୀକାର କରିବାକୁ ରାଜି ହୁଅନ୍ତି ନାହିଁ । ଆପଣଙ୍କ ପଦ୍ୟର

ଅବତରଣିକାରୁ ଆପଣଙ୍କ ପଦ୍ୟର ମଧୁରତା ପ୍ରଭୃତି ଜଣା ଯିବାରୁ ଆପଣଙ୍କ ପଦ୍ୟ ଟୁଙ୍ଗୀରେ ପ୍ରକାଶିତ ହୋଇ ନାହିଁ । ଉତ୍ତ ଅଭିଜ୍ଞ ଇଂରାଜୀ କବିତା କବିତାପଦବାଚ୍ୟ ନୁହେ । ତା ଉପରେ ପୁଣି ଅଦ୍ୟ ପ୍ରାନ୍ତ ଯମକ ! ଯାହା କି ଅଧୁନାତନ ଇଂରାଜୀ କବିତାରେ ଘୃଣ୍ୟ ଓ ପରିହାର୍ଯ୍ୟ । ଇଂରାଜୀ କବିତା ରଚନା କରିବାକୁ ହେଲେ ପ୍ରଗାଢ଼ ବିଦ୍ୟା ଓ ସ୍ୱରନିୟମରେ ପାଣ୍ଡିତ୍ୟ ଆବଶ୍ୟକ । ଗୋଟିଏ ସାଧାରଣ ନିୟମ ଆପଣ ଜାଣି ରଖନ୍ତୁ ଯେ ଯେବେ କୌଣସି ରଚନାରେ କଷ୍ଟ ବାହାନୁସ୍ୱା ଭା କୃତ୍ରୁ ଥାଏ, ତାହା ପାଞ୍ଚ ଜଣଙ୍କ ଆଗରେ ପଢ଼ିଲେ ଅବଶ୍ୟ ଅନୁଭବୀ କେହି ତାହା ଅଶ୍ରଦ୍ଧାସହକାରେ ଶ୍ରବଣ କରିବେ । ଅନେକ ଲୋକ ଦୁଃଖ କରନ୍ତି ଯେ ସେମାନଙ୍କ ରଚନାକୁ ସର୍ବସାଧାରଣ ବା ସମ୍ପାଦକମାନେ ଗ୍ରାହ୍ୟ କଲେ ନାହିଁ । ( ଅବଶ୍ୟ କେତେକ ଦୃଷ୍ଟାନ୍ତମାନ ଛାଡ଼ି ଦିଅ ।) ସେମାନଙ୍କ ମଧ୍ୟରୁ ଅଧିକାଂଶ ଏତେ ନିର୍ବୋଧ ଯେ ସେମାନେ ଇଙ୍ଗିତରେ କୌଣସି ବିଷୟ ବୁଝି ପାରନ୍ତି ନାହିଁ ଓ ମୁହେଁ ମୁହେଁ ପ୍ରହାର ନ ପାଇବା ଯାଏ ଆପଣାର ଦୋଷ ବୁଝି ପାରନ୍ତି ନାହିଁ । କାଲି ଆପଣ ମୋ ନିକଟକୁ ଆପଣଙ୍କ ପଦ୍ୟଟି ଆଣିବେ, ମୁଁ ଆପଣଙ୍କୁ ଉତ୍ତମ ରୂପେ ବୁଝାଇ ଦେବି ।

ମୁଁ କହିଲି, ଯେ ଆପଣା ନିର୍ବୁଦ୍ଧିତା ବୁଝି ନ ପାରେ, ତାକୁ 'ପ୍ରକୃତ ସତ୍ୟ' କହି କି ବୁଝାଇ ଦେବ ନାହିଁ ?

ରମାକର ମିଶ୍ର କହିଲେ, ଅନୁଭବ କରି ନାହାନ୍ତି । ନିର୍ବୋଧଙ୍କୁ ବୁଝାଇ ସମ୍ଝାଇ ବୋଧ କରିବା ଅନେକ ସ୍ଥଳରେ ଅସମ୍ଭବ ।

ପଣ୍ଡିତ ମହାଶୟ କହିଲେ, 'ଆକାରୈରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷିତେନ ଚ; ନେତ୍ରବକ୍ତ୍ରବିକାରୈଶ୍ଚ ଗୃହ୍ୟତେଽନ୍ତର୍ଗତଂ ମନଃ ।' ଆମ୍ଭ ମତରେ ଯେଉଁ ଲୋକ ବାକ୍ୟରେ ବୋଧ ନ ହେବ, ଈଦୃଶ ଲୋକଙ୍କ ପ୍ରତି ନେତ୍ର ବକ୍ତ୍ର ବିକାର ଆବଶ୍ୟକୀଭୂତ । ତେଣୁ 'ଭାଷିତ' ଦ୍ୱାରା ପରୀକ୍ଷା ନ କରି 'ନେତ୍ରବକ୍ତ୍ରବିକାର' ଅଦୌ ପ୍ରୟୋଜ୍ୟ ନୁହେ ।

ସର୍ବଜ୍ଞ :—ଆପଣ ଯାହା କହିଲେ, ତାହା ଅନେକ ସ୍ଥଳରେ ସତ୍ୟ, କିନ୍ତୁ କେତେ ପ୍ରସିଦ୍ଧ ନୋଭେଲ୍ କବି ଓ ଉଚ୍ଚ ଏହିପରି ଅନେକ କବିତାଗ୍ରନ୍ଥରେ ସୃଷ୍ଟି ହୋଇ ପଡ଼ି ଅଛନ୍ତି, ଥରେ ବିଚାର କରି ଦେଖନ୍ତୁ । ବିଶେଷତଃ ଯଦି ସେ କବିର ଗାଥାର ଅନ୍ତଃପ୍ରକୃତିରେ ଓ ସମ୍ୟକ୍ ବିକୃତ ଦଶା ହୋଇଥାଏ !

ରାମଚନ୍ଦ୍ର ମିଶ୍ର :—ସର୍ବଜ୍ଞେ ! ସବୁ ନିୟମର ବ୍ୟଭିଚାର ଥିବି ଅଛି । ସେହିପରି ସବୁ କ୍ଷମତାର ଅପବ୍ୟବହାର ଅପରିହାର୍ଯ୍ୟ । ଯେଉଁ ଅସ୍ତ୍ର-ଦ୍ୱାରା ଦୁର୍ବଳ ଓ ବିପଦ୍‌ଗ୍ରସ୍ତ ଲୋକଙ୍କୁ ଉଦ୍ଧାର କରାଯାଏ, ସେହି ଅସ୍ତ୍ରଦ୍ୱାରା ନିର୍ଦ୍ଦୋଷ ପ୍ରାଣୀ ମଧ୍ୟ ହତ ହୁଏ । ଅତଏବ ସବୁ କ୍ଷମତା ଓ ନିୟମ ( ବିଶେଷତଃ ଜନ୍ତୁର ନିୟମ ) ଅତି ସାବଧାନତା ସହିତ ପ୍ରୟୋଗ କରିବା ବିଧେୟ । ବ୍ୟଭିଚାର ଅବସ୍ଥାର ଉପସ୍ଥିତିରେ ସାଧାରଣ ନିୟମର ଅସତ୍ୟତା ପ୍ରତିପନ୍ନ ହୋଇ ନ ପାରେ । ଯାହା ହେଲେ ଥରେ ବାତୁଳାଶ୍ରମ ବୁଲି ଦେଖି ଆସିଲେ 'Man is a rational being' (ମନୁଷ୍ୟ ବୁଦ୍ଧିବନ୍ତ ପ୍ରାଣୀ) ଏ ସାଧାରଣ ନିୟମଟିର ସତ୍ୟତା ରହନ୍ତା ନାହିଁ ।

ସର୍ବଜ୍ଞ :—ଆମ୍ଭମାନଙ୍କ କଥାପ୍ରସଙ୍ଗରୁ ଗଲିନ୍ତୁ । ଆଜ ଅତୀତର ସ୍ମୃତି କଥା ପଡ଼ିଗଲା । ମୁଁ Wordsworth, Shelley, Keats, Goldsmith ଇତ୍ୟାଦିଙ୍କର କବିତା ପଢ଼ି ପଢ଼ି ଅତୀତର ସ୍ୱର୍ଗରେ କ୍ଷଣକାଳ ପାଇଁ ବାସ କରେଁ । ଶକୁନ୍ତଳା, କୁମାରସମ୍ଭବ ଇତ୍ୟାଦିର ଅନେକ ସ୍ଥାନ ଅତୀତର ସ୍ମୃତି ଜାଗରୂକ କରି ଦିଏ । ମନେ କରନ୍ତୁ 'In secret we met, in silence I grieve' 'Strongest minds are often those of whom the noisy world hears least';

'Smiling they live and call life pleasure
To me that cup has been dealt in another
measure'

'ଅଦ୍ୟପ୍ରଭୃତ୍ୟବନତାଙ୍ଗି ତବାସ୍ମି ଦାସଃ'

ଏ ଶ୍ଳୋକଗୁଡ଼ିକ ଦେଖିଲେ ମନକୁ କେତେ କଥା ଆସି ଘାରିପକାଏ।

ରମାକର ମିଶ୍ର କହିଲେ—ଆପଣଙ୍କ Byron, Wordsworth, Shelley, କାଳିଦାସଙ୍କୁ ଛାଡ଼ନ୍ତୁ । Birdseye ସିଗରେଟ ବାକ୍ସ ଉପରେ ଯେଉଁ ଛବି ମାରିଥାଏ, ଥରେ ଗୋଟିଏ ଛବି ଦେଖି ମୋ ମନରେ କେତେ ଅତୀତ ଚିତ୍ର ଅଙ୍କିତ ହୋଇଗଲା । ସେ କାର୍ଡ ପୃଷ୍ଠରେ ଏହା ଲେଖାଥିଲା—

"Sometime sweetheart, when beauty's bloom
Shall fade, and sorrow's frost
Shall rest upon the silent tomb
Of joys for ever lost,
Though all the world should seem to shun
Thy glance, and pass thee by,
O, then sweetheart, remember one
Whose love will never die."

ମୁଁ କହିଲି—ଓଡ଼ିଆ ଭାଷାର ନ୍ୟାଯ୍ୟ ପ୍ରାପ୍ୟ ତାକୁ ଦିଅନ୍ତୁ । ଭକ୍ତ କବିଙ୍କ ବୈଦେହୀଶବିଳାସ, ପୁଣି ଛାନ୍ଦମାଳା, ଉପହାର, ପୁଷ୍ପମାଳା, ପଲ୍ଲିଚିତ୍ର ଓ ନିର୍ଝରିଣୀ ଇତ୍ୟାଦିରେ ଯେତିକି ଅତୀତର ସ୍ମୃତି ଉଦ୍ଦୀପିତ ହୁଏ, ବୋଧ ହୁଏ ଅନ୍ୟ ସାହିତ୍ୟଲିପିମାନ ଆମ୍ଭମାନଙ୍କ ମନକୁ ଏତେ ସ୍ମୃତି ଆଣି ପାରିବ ନାହିଁ । ପ୍ରକୃତ କଥା କହିବାକୁ ଗଲେ ଅଧିକାଂଶ ଓଡ଼ିଆ ଘରେ ଛାନ୍ଦମାନର ଭାଷା ପଢ଼ିବାର ଭଙ୍ଗା ହୋଇ ଯାଉଅଛି । କହିବାକୁ ଲଜ୍ଜା ହେଉଅଛି, ଜଣେ କୃତବିଦ୍ୟ ଯୁବକ, (ଗୋଟିଏ ଗୋଟିଏ ମାଇନର ସ୍କୁଲର ହେଡ୍ ପଣ୍ଡିତ) 'ମେଘ ଜଳଛିଡ଼ ଚପଳ ଚପଳ ହେଉଛିଲ ମାଇଲା ଚିତ୍ରା' ଏହାକୁ ହସରେ ଉଡ଼ାଇ ଦେଲେ। କହିଲେ' 'ଛି ! ଏଗୁଡ଼ାକ ସାହିତ୍ୟର ଆବର୍ଜନା।' ଅତୀତର ଓ ବିଶେଷତଃ ବାଲ୍ୟ କାଳର ସ୍ମୃତିର ଅନନ୍ୟତା, ଏ କଥା ସେ ଦିନେ

ପୃଷ୍ଠରେ ପୃଷ୍ଠା ଦେଖି ନାହାନ୍ତି । ମୁଁ ଯେବେ କବିତାବଳୀ ପ୍ରଥମ ଭାଗ ଦେଖିଥିଲି । ସେ କହିଲେ "ତୁମେ ବଡ଼ ହେଲଣି, ଆଉ କବିତାବଳୀର 'ଶରତ୍ ପ୍ରଭାତ' କଣ ପଢ଼ୁଛ ?' ଅତୀତସ୍ମୃତି ଓ ବାଲ୍ୟସ୍ମୃତି ବୃଦ୍ଧାବସ୍ଥାର ଗୋଟିଏ ପ୍ରାର୍ଥନୀୟ ଓ ଅପରିହାର୍ଯ୍ୟ ସମ୍ବଳ । ଯାହାର ଏହା ନାହିଁ, ସେ 'ଚରତ୍ୟେଷୌ କିନ୍ତୁ ଧ୍ୱଣାନ୍ତ ଭୁଂକ୍ତେ ।' ବଳଙ୍କର ନିର୍ଝରିଣୀ ଓ ଓ ପଲ୍ଲୀଚିତ୍ର; ସେନାପତିଙ୍କର ଉପହାର ଓ ପୁଷ୍ପମାଳା; ଗଁଓଙ୍କର ଛନ୍ଦମାଳ ଓ କବିତାବଳୀର କେତେକ ଅଂଶ ଛନ୍ଦେ ଛନ୍ଦେ ବାଲ୍ୟସ୍ମୃତି, ଗ୍ରାମ୍ୟସ୍ମୃତି ଜାଳି ଦେଉଅଛି ।

ରମାକର ମିଶ୍ର—ଅତୀତର ସ୍ମୃତି ଅବଶ୍ୟ ମୂଲ୍ୟବାନ୍, କିନ୍ତୁ ବ୍ୟକ୍ତି ବିଶେଷରେ ଅନୁଭୂତିର ପାର୍ଥକ୍ୟ ହେତୁ ତାହା ବିଭିନ୍ନ; ଯାହା ଆପଣଙ୍କୁ ଭଲ ଲାଗିବ, ମତେ ତାହା ଭଲ ନ ଲାଗି ପାରେ । ଆପଣଙ୍କର ମୋର ଅନୁଭବ ସମାନ ହୋଇ ନ ଥିଲେ, ଯେଉଁ ପୁସ୍ତକ ପଢ଼ି ଆପଣ ଅତୀତର ସ୍ମୃତିରେ ବୁଡ଼ି ଯିବେ, ମୁଁ ତାକୁ ନୀରସ ମଣିବି । ଉଦାହରଣ ସ୍ୱରୂପ;—ମୁଁ ଗପ୍ପ କବିଙ୍କର ଜିଲ୍ଲାର ପ୍ରାକୃତିକ ଦୃଶ୍ୟଗୁଡ଼ିକୁ ପ୍ରଥମ ସ୍ଥାନ ଦେଉଅଛି । ଏସବୁ ବ୍ୟକ୍ତିବିଶେଷଙ୍କ ରୁଚିଭେଦର ଫଳ ।

ପଣ୍ଡିତ ମହାଶୟ—ଆହା ! ଆମ୍ଭର ବାଲ୍ୟ ସହଚର, ବାଲ୍ୟ କ୍ରୀଡ଼ା ଇତ୍ୟାଦି ମନେ ପଡ଼ିଲେ ଯେଉଁ ଆନନ୍ଦୋପଲବ୍ଧି ହୁଏ, ତାହା ଉପଭୋଗ୍ୟ । ବାଲ୍ୟକାଳୀନ ସ୍ଥାନ ବସ୍ତୁମାନ ନୟନଗୋଚରୀଭୂତ ହେଲେ ଆମ୍ଭେ ପ୍ରେମ-ପାରାବାରରେ ଅନାୟାସ ମଗ୍ନ ହେଉଁ । ବାଲ୍ୟକାଳର ନିର୍ଦ୍ଦୋଷ ଓ ନିଷ୍କପଟ ଅବସ୍ଥା ସହ ଏ ସମୟର କପଟାଚାର ଯେଉଁ ପୈଶାଚିକରୂପେ ତୁଳନୀୟ ହୁଏ । ସେ ଦିବସମାନ କେଉଁ ଆଡ଼େ ଗଲା ଗଲା ଚାଲି ଗଲା । ମନୁଷ୍ୟ ସହଜରେ ବୃଦ୍ଧାବସ୍ଥାର ଆକ୍ରମଣର ବଶ୍ୟତା ସ୍ୱୀକାର କରିବାକୁ ନିତାନ୍ତ ଅନିଚ୍ଛୁକ । ନିତାନ୍ତ 'ଅପ୍ରସ୍ତୁତ' ନ ହେଲେ 'ବୃଦ୍ଧୋଽହଂ' ଏବମ୍ଭୂତ ବାକ୍ୟୋଚ୍ଚାରଣ କରିବାକୁ ପ୍ରାୟ ଅଧିକାଂଶ ନାରାଜ ।

ଏହି ସମୟରେ ଶ୍ରୀମନ୍ତ ଜମିଦାରଙ୍କ ସରଦାର ଘନ ବେହେରା ଆସି ଟୁଙ୍ଗୀରେ ଉପସ୍ଥିତ ହେଲା । ଜମିଦାରଙ୍କ ନିକଟରେ କିଛି କାର୍ଯ୍ୟ ଥିଲେ ସରଦାରଙ୍କ ଅନୁଗ୍ରହ ନ ହେଲେ ସବୁ ବ୍ୟର୍ଥ । ସରଦାରଙ୍କ କୋପଦୃଷ୍ଟି ହେଲେ ଗ୍ରାମରେ ଦଣ୍ଡେ ରହିବା ଅସମ୍ଭବ । ବିଶେଷତଃ ଆମ୍ଭେମାନେ ମଫସଲର ଗ୍ରାମବାସୀ, ଅଳ୍ପ ବହୁତ ସମସ୍ତେ ଜମିଦାରଙ୍କ ଅନୁଗ୍ରହ ଉପରେ ନିର୍ଭର କରୁଁ ଓ ଅନେକ ବିଷୟର ଅଭାବ ଜମିଦାରଙ୍କ ଅନୁଗ୍ରହରୁ ଦୂରୀଭୂତ ହୁଏ । ( ଯେଉଁମାନେ ସହରରେ ଥାଇ ଘର ପାଖ ମୁଦି ଦୋକାନରୁ ଡାଲି, ଚାଉଳ, ତେଲ ଲୁଣ, କାଠ ଖରିଦ କରି ଚଳନ୍ତି, ସେମାନେ ଉପରଲିଖିତ ପ୍ରସଙ୍ଗ ସହଜରେ ବୁଝି ପାରିବେ ନାହିଁ ।) ଘନ ବେହେରା ବାର୍ଷିକ ୧୬ ଟଙ୍କା ଦରମା ପାଏ । ତା ମଧ୍ୟ ଗତ ପାଞ୍ଚ ବର୍ଷ ହେଲା ବାକି, ତଥାପି ସେ ପ୍ରାୟ ଦୁଇ ହଜାର ଟଙ୍କାର ବିଷୟ କରିଛି । ସେଥିପାଇଁ କହନ୍ତି, 'ସନ୍ତ୍ୟ ଦ୍ୱାରଭିଜାନ୍ତ୍ୟା ଯଦ୍ୟପ୍ୟଳ୍ପଶକ୍ତୟଃ । ଯା ହି ସ୍ୱେଚ୍ଛୟା ସ୍ୱେଚ୍ଛା-ମୁଖଦେଶା ଭବନ୍ତି ନଃ ।' ଦରମା ପଛକେ ନ ମିଳୁ କିନ୍ତୁ ତେଣିକି ପ୍ରଜା ଚିନ୍ତ । ଘନ ବେହେରା ଜମିଦାରଙ୍କ ଅନୁମତି ପାଇ ଆସନ୍ତା ପୁଅଟିକୁ ସ୍କୁଲରେ ପଢାଇବାକୁ ଆଶା ଜାଣିଛି । ପୁଅ ମୁକ୍ତାରୀ ଖଣ୍ଡେ ପାଶ କଲେ ଅନ୍ତତଃ ଜମିଦାରଙ୍କ କାର୍ଯ୍ୟରେ ତ ପୁରୁଷାନୁକ୍ରମେ ଚଳାଇବ । ଆଉ ଏତେକ କାର୍ଯ୍ୟ ଅଛି ବୋଲି ଘନ ବେହେରା ଟୁଙ୍ଗୀରେ ଉପସ୍ଥିତ ।

ଘନ ବେହେରା ମାଷ୍ଟର ମହାଶୟଙ୍କୁ କହିଲା—ମାଷ୍ଟରେ ! ତୁମେ ତାଙ୍କ ପାଖରେ କାଠ ଗଛ ପାଇଁ ଅନୁସରଣ କରିଥିଲ । ମୁଁ ତହସିଲ-ଦାରଙ୍କଠାରୁ ଖଣ୍ଡେ ହୁକୁମନାମା କରେଇ ଦେବି । ମୋ ପିଲାଟିକି ଟିକେ ଆଉ ତୁମ ପାଖରେ ପଢେଇବ । ପିଲାଟି କିଛି ଦିନ ଉପରେ ଥାଇଲା ।

ମାଷ୍ଟର ମହାଶୟ—( ଭବିଷ୍ୟତରେ କେତେ ବେଳେ ମାଷ୍ଟରଙ୍କ ମନରେ ଆଶିଷ ହୋଇ ଗଲା । ତା ହେଲେ ଘନ ବେହେରା

ମାଷ୍ଟରଙ୍କର ନିଜସ୍ୱ ହେବ ଓ ମାଷ୍ଟର ମହାଶୟଙ୍କ ଭାଗ୍ୟରେ ଅନେକ ମିଥ୍ୟା ସାମଗ୍ରୀ, କାଠଗଛ ଓ (ଦେଉଁ ଥାନ ଛୁଟିବ) ବେଶ୍ କଥା, ମୁଁ ତ ତୁମଙ୍କୁ ସେ thing (ଓଃ ରାମ୍ !) ବସ୍ତୁ କହିବାକୁ ବସିଥିଲି । ତୁମକୁ God ( ଓଃ ! ) ଈଶ୍ୱର କଣ ନ କରନ୍ତୁ । ତୁମ boy (ପିଲା) ନ ପଢ଼ିବ, ଅଉ୍ କଏ ପଢ଼ିବ ?

ରାମ ବେହେରା—ମୁଁ ନାହାକଙ୍କୁ ତାଙ୍କ ଦିନ ଠିକ କରନ୍ତୁ, ପୁନଥ ବାହି ଦିନ ମୋ ପୁଅ ଘରୁ ଅନୁକୂଳ କରି ଆସିବ—ଏହା କହି ଟୁଙ୍ଗୀରୁ ପ୍ରସ୍ଥାନ କଲା । ( ରାମ ବେହେରାର ସମସ୍ତ ତତ୍ତ୍ୱ ମୂଲ୍ୟବାନ୍ । ସେ କହେ ଯେ ତାଙ୍କୁ ମଗବାନ୍ ପୁଣି ଫୁରସତ ନାହିଁ । ବଡ଼ ବଡ଼ ବାରିଷ୍ଟର ବା ଓକିଲମାନଙ୍କର ସମୟର ମୂଲ୍ୟ ନିରୂପିତ ହୋଇଅଛି । କିନ୍ତୁ ରାମ ବେହେରାର ସମୟ ଅମୂଲ୍ୟ ବା ନିର୍ମୂଲ୍ୟ । )

ମାଷ୍ଟର ମହାଶୟ ଅତି ଦ୍ରୁତବେଗରେ ବସାକୁ ନୂତନ ପଞ୍ଜିକା କିଣିବା ପାଇଁ ଗଲେ । ପୁନଥ କେଉଁ ଦିନ ପଡ଼ିବ, ଏ କଥା ସ୍ଥିର ନ କରିବା ପର୍ଯ୍ୟନ୍ତ ମାଷ୍ଟର ମହାଶୟ ଅସ୍ଥିର ।

ମାଷ୍ଟରଙ୍କ ଅନୁପସ୍ଥିତିରେ ସର୍ବଗର୍ଜ କହିଲେ, ଥଜି Brewer's Dictionary ଦେଖୁ ଦେଖୁ 'ଜଗନ୍ନାଥ' ଶବ୍ଦର ଅର୍ଥ ଦେଖି ହାସ୍ୟ ସମ୍ବରଣ କରି ପାରିଲି ନାହିଁ ।

ପଣ୍ଡିତ ମହାଶୟ କ୍ରୋଧ କଲେ, 'ବିଦେଶୀୟଭାଷାନଭିଜ୍ଞ ମାନ୍ଦ୍ରଗମାନଙ୍କ ସମ୍ମୁଖରେ କଦାପି ବିଜାତୀୟ ଭାଷାସମ୍ବନ୍ଧୀୟ ବାକ୍ୟ ଓ ଶବ୍ଦମାନ ବ୍ୟବହାର ନ କରି ଅମ୍ଭର ଅନୁପସ୍ଥିତ ଏକାନ୍ତ ପ୍ରାର୍ଥନୀୟ ବୋଲି ଅମ୍ଭଙ୍କୁ ସ୍ପଷ୍ଟତଃ କହିଲେ ଅମ୍ଭେ ଏଠାରୁ ସ୍ଥାନାନ୍ତରିତ ହେବୁଁ । ଅମ୍ଭର ଅବୋଧଗମ୍ୟ ଶବ୍ଦମାନ ଅମ୍ଭ ନିକଟରେ ଚର୍ଚ୍ଚା କରି ଅମ୍ଭଙ୍କୁ ଅପମାନିତ କଲେ ତୁମ୍ଭେମାନେ ନିନ୍ଦିତବ୍ୟ ।

ସର୍ବଗର୍ଜ—ପଣ୍ଡିତ ମହାଶୟ ! ଆପଣ କ୍ଷମା କରନ୍ତୁ, ମୋର ହାସ୍ୟ କହିବାର ମାନେ ଓଡ଼ିଆରେ ବୁଝାଇ ଦେଉଛି, ଶୁଣନ୍ତୁ:—ପ୍ରଥର

ସାହେବ ଇଂରାଜୀରେ ଖଣ୍ଡିଏ ଅଭିଧାନ କରିଅଛନ୍ତି । ସେ ଅଭିଧାନରେ 'ଜଗନ୍ନାଥ' ଶବ୍ଦର ଜ୍ଞାତବ୍ୟ ବିଷୟ ଏହିପରି ଭାବରେ ବ୍ୟାଖ୍ୟା କରି ଅଛନ୍ତି । (ଖଣ୍ଡେ କାଗଜ ବାହାର କରି ସର୍ଦ୍ଦାରଜୀ ଉକ୍ତ ଅଂଶ ତର୍ଜ୍ଜମା କରି କହିଲେ ) "ଜଗ୍ଗର୍ନାଟ୍ ବା ଜାଗ୍ଗର୍ନାଟ୍—ଏକ ହିନ୍ଦୁ ଦେବତା; ଏ ଶବ୍ଦଟି ସଂସ୍କୃତ ଜଗନ୍ନାଥ ( ଜଗତର କର୍ତ୍ତା )ର ଅପଭ୍ରଂଶ । ଏ ଦେବତାଙ୍କର ଦେଉଳ ଓଡ଼ିଶାରେ ଜଗନ୍ନାଥ ନାମକ ଏକ ନଗରରେ ଅବସ୍ଥିତ । ଗୋଟିଏ ଦେବାଳୟ ନିମନ୍ତେ ସ୍ଥାନ ସ୍ଥିର କରିବା ପାଇଁ 'ଅଇନ୍ ଅକବରୀ' ନାମକ ରାଜା ଜଣେ ବିଦ୍ୱାନ୍ ବ୍ରାହ୍ମଣଙ୍କୁ ପଠାଇଲେ । ବ୍ରାହ୍ମଣ ଅନେକ ଦିନ ପର୍ଯ୍ୟନ୍ତ ଘୂରି ଅନ୍ତେ ବୁଲିଲେ ଏବଂ ଦେଖିଲେ ଯେ ଗୋଟିଏ କାକ ଜଳରେ ସ୍ନାନ କରି ସାରି ଜଳକୁ ନମସ୍କାର କଲା ଓ ସେହି ସ୍ଥାନଟି ଦେବାଳୟର ଉପଯୁକ୍ତ ସ୍ଥାନ ନିର୍ଣ୍ଣୀତ ହେଲା । ଦେବାଳୟ ନିର୍ମିତ ହେବା ସମୟରେ ରାଜା ସ୍ୱପ୍ନ ଦେଖିଲେ ଯେ ପର ଦିନ ପ୍ରାତଃକାଳରେ ବିଷ୍ଣୁଙ୍କର ମୂର୍ତ୍ତି ରାଜାଙ୍କର ନୟନଗୋଚର ହେବ । ପ୍ରାତଃକାଳରେ ରାଜା ଦେବାଳୟ ଦେଖିବାକୁ ଯାଇ ଜଳରେ କାଷ୍ଠଖଣ୍ଡ ଦେଖିଲେ ଏବଂ ଏହାକୁ ବିଷ୍ଣୁଙ୍କ ମୂର୍ତ୍ତି ମଣି 'ଜଗନ୍ନାଥ' ନାମରେ ଦେବାଳୟରେ ପ୍ରତିଷ୍ଠିତ କରାଇଲେ । ବୁଚନ ସାହେବ ଟର୍ଣ୍ଣଲ୍ ସାହେବଙ୍କ ମତବାଦରୁ ଲେଖିଅଛନ୍ତି ଯେ ଜଗନ୍ନାଥ ସପ୍ତଫେଣୀ ସର୍ପର ଅକୃତ ଏବଂ ପ୍ରତ୍ୟେକ ଗଣ୍ଡଦେଶରେ ପକ୍ଷଯୁକ୍ତ । ଯେତେବେଳେ ଜଗନ୍ନାଥ ରଥରେ ଯାନ୍ତି, ଏ ପକ୍ଷମାନ ବନ୍ଦ ହୋଇଥାଏ ଓ ଖୋଲି ଯାଉଥାଏ । ଜଗ୍ଗର୍ନାଟଙ୍କ ରଥ—ସର୍ବ ପ୍ରକାର ପ୍ରତିମୂର୍ତ୍ତିରେ ଅଳଂକୃତ ଷୋଡ଼ଶଚକ୍ରଯୁକ୍ତ ଏକ ବୃହତ୍ କାଷ୍ଠଯନ୍ତ୍ର । ପ୍ରତି ବର୍ଷ ୫୦ ଜଣ ଲୋକ ଏହାକୁ ଦେଉଳ ନିକଟକୁ ଟାଣି ନିଅନ୍ତି ଏବଂ ଏଥିରେ ଠାକୁରଙ୍କ ନିମନ୍ତେ ଗୋଟିଏ ବଳିପ୍ରାଣୀ ଥିବାର କଥିତ ହୁଏ, ପୂର୍ବେ ଅନେକେ ଏ ରଥଦ୍ୱାରା ଦଳି ହୋଇ ମୃତ ହୋଇଥିଲେ । (କେତେକ ଲୋକ ଜାଣିଶୁଣି ରଥ ଅଗରେ ଡେଇଁ ପଡ଼ି ପ୍ରାଣ ଦେଉଥିଲେ)

ଓ କେତେକ ଲୋକ ଇଂଲଣ୍ଡରେ ଲୋକମାନେ ରେଲ ଗାଡ଼ି ତଳେ ପଡ଼ିଲା ପରି କେତେ କେତେ ଉପର ଘର ତଳେ ଯାଇ ପଡ଼ୁଥିଲେ. କେତେକ ଲୋକ ଭକ୍ତିଭାବରେ ପଡ଼ୁଥିଲେ ।) ଇଂରାଜ ଗବର୍ଣ୍ଣମେଣ୍ଟଙ୍କ ପୁଲିସ ବନ୍ଦୋବସ୍ତ ହେଉ ଏପରି ମରଣ ପ୍ରଥା କାର୍ଯ୍ୟତଃ ବନ୍ଦ ହୋଇଅଛି ।”

ପଣ୍ଡିତ ମହାଶୟଙ୍କୁ ଠିକ ବାକ୍ୟରୁ ବରଷ ଦେବାକୁ ଯାଉଏ ଲାଗିଲା । (ମଫସଲରେ ଯାହାକୁ ଆମ୍ଭମାନେ ଯାଉଏ କହୁଁ, ତାହା ସହରରେ ଚୋ ହ୍ୱାର୍ଟର ।)

ପଣ୍ଡିତ ମହାଶୟ କହିଲେ—‘ଜଗର୍ନାଟ୍’ ନୁହେ; ଜଗନ୍ନାଥ ପ୍ରକୃତ କଥା—ଜଗତର ନାଥ=ଜଗନ୍ନାଥ; ଜଗତର ନର୍ଟ=ଜଗନ୍ନର୍ଟ; ଜଗନ୍ନାଥ ପ୍ରକୃତରେ ଜଗତର ନଟ ଅଟନ୍ତି । ‘ଅଘଟଣଘଟଣାନାଟକ-ସ୍ୟାଭିନେତା ।’ ଆମ୍ଭେ ଏଥିପାଇଁ କହୁଁ ଆଧୁନିକମାନଙ୍କର ନବନବୋ-ନ୍ମେଷଶାଳିନୀ ପ୍ରତିଭା ବସ୍ତୁଯୋଗ୍ୟପ୍ରାବଣା । କିମ୍ବା ଜଗତ ଥିଲା ନାଟ= ଜଗନ୍ନାଟ । ଯେପରି ଅମୁକ୍ ଦେଶର ନାଟ୍ ସାହେବ, ଜଗନ୍ନାଟ ସେହିପରି ବ୍ରହ୍ମାଣ୍ଡର ନାଟ, କହିଥିଲେ ନୃତ୍ୟ କର ହୋଇଥାନ୍ତା ।

ମୁଁ କହିଲି—ପଣ୍ଡିତ ମହାଶୟ ! ଏ ଅଭିଧାନଲେଖକ ଆଧୁନିକ ନୁହନ୍ତି । ଏ ଆପଣଙ୍କର ପିତାମହପଦବାଚ୍ୟ । (ମର୍ଦ୍ଦରାଜଙ୍କୁ ସମ୍ବୋଧନ କରି ) ଅନେକ ବହୁ ସଂଗ୍ରହ କରିବାକୁ ହେଲେ ଭ୍ରମ ଅବଶ୍ୟମ୍ଭାବୀ । Brewer ସାହେବ ଯେଉଁ Dictionary ସଙ୍କଳନ କରିଅଛନ୍ତି, ସେପରି ପୁସ୍ତକ ସଙ୍କଳନ କରିବାକୁ ହେଲେ ଅନ୍ୟ ଲୋକଙ୍କ ଲେଖା ଉପରେ ବିଶେଷ ନିର୍ଭର କରିବାକୁ ହୁଏ । ଏପରି ସ୍ଥଳରେ ଏ ଦୋଷ ମାର୍ଜ୍ଜନୀୟ । କଣ କହିବ ? ଏହା ଜ୍ଞାନକୃତ ଦୋଷ ନୁହେ ।

ମର୍ଦ୍ଦରାଜେ—ମୁଁ Brewer ସାହେବଙ୍କ ଦୋଷ ଧରୁ ନାହିଁ । କିନ୍ତୁ ଏହା ପଢ଼ି ଜଣେ ବିଦେଶୀଯୁକ୍ତ ମନରେ କି ଚିତ୍ର ଅଙ୍କିତ ହେବ, ତାହା କହୁଥିଲି ।

ସମ୍ବନ୍ଧର ମିଶ୍ରେ କହିଲେ Brewer ସାହେବ ଓ ବିଦେଶୀମାନେ ସେ ଏ ସ୍ଥାନର କୌଣସି ବିଷୟ ଜାଣନ୍ତି ନାହିଁ । ତାହିଁକି, ଅମ୍ଭମାନଙ୍କ ସ୍ୱଦେଶୀମାନଙ୍କ କଥା ଧରନ୍ତୁ । 'ଓଡ଼ିଶା ବେଦେଶ ଓ ମାଲିର ଦେଶ' ଏହା ମୁଁ କଲିକତାରେ ବିଶେଷ ମାନ୍ୟ ଗଣ୍ୟ ଲୋକଙ୍କ ମୁହଁରୁ ଶୁଣି ଆସିଅଛି । ଓଡ଼ିଶାରେ ଶିକ୍ଷିତ ଲୋକ ବା ଭଦ୍ରଲୋକ ଅଛନ୍ତି, ଏ କଥା କଲିକତାର ବେତେକ ଲୋକଙ୍କୁ 'ଆକାଶକୁସୁମ' ପରି ବୋଧ ହେବ । 'ଓଡ଼ିଆ ମେଣ୍ଢା' ଅର୍ଥ କଣ ? (ମେଣ୍ଢାଙ୍କ ଲୋମ କାଟି ଅନ୍ୟ ଲୋକ-ମାନେ ନିଜ ନିଜ ଦେହ ଆବୃତ କରନ୍ତି ବା ଜୀବିକା ନିର୍ବାହ କରନ୍ତି ଓ କେହି କେହି ମେଷ ମାଂସ ଖାନ୍ତି । ଓଡ଼ିଆଙ୍କ ସ୍ଥିତ ଏହା କିପରି ଘଟିଲା, ଏହା ସ୍ଥିର କରିବା ନିମନ୍ତେ ଐତିହାସିକ, ସାହିତ୍ୟିକ, ଶାରୀରିକ, ସାମାଜିକମାନଙ୍କର ସୁଗାର ଅଧ୍ୟବସାୟ ଆବଶ୍ୟକ ।)

ସର୍ବଶକ—ମିଶ୍ରେ ! ଓଡ଼ିଶା ବେଦେଶ ଓ ମାଲିର ଦେଶ ବୋଲି ବଙ୍ଗଳା ଅଞ୍ଚଳରେ ଯେଉଁ ବିଶ୍ୱାସ ଅଛି, ତାହା ଅମୂଳକ ନୁହେଁ । କଲିକତାର ପନର ପଣ ଉଣେଇଶି ଗଣ୍ଡା ଓଡ଼ିଆମାନେ ସେଠାରେ ଯେଉଁ ଯେଉଁ କାର୍ଯ୍ୟ କରନ୍ତି ତାହା ପ୍ରକାଶ କରିବାକୁ ଲଜ୍ଜା ବୋଧ ହେଉଅଛି । ଗୋଟିଏ ବଙ୍ଗଳା ଅଭିଧାନରେ ଲେଖା ଅଛି;—ଉତ୍କଳ ଭାରବାହକମାନଙ୍କ ଦେଶ । ଓଡ଼ିଆ ବେଦେଶମାନଙ୍କର 'ବାଟରେ ଦଣ୍ଡ' ବୋଲି ଗୋଟାଏ ନାମ ରହି ଯାଇଅଛି । ଯେତେ ନୀଚ କାର୍ଯ୍ୟ ଦେଖ, କେବଳ ଖୋଟ୍ଟା ଓ ଓଡ଼ିଆ । କଲିକତାର ଲୋକେ ତ ଏହିକି କହନ୍ତି, ଯାହା ଦେଖିଲେ ତାହା କହିଲେ । ଥରେ ବଡ଼ବଜାର ଓ ଓଡ଼ିଆ ପଡ଼ାକୁ ଗଲେ ଜାଣିହି ପାରିବେ ।

ମୁଁ :—ଆପଣମାନେ ଯାହା କହନ୍ତି, କିନ୍ତୁ ମୁଁ ସେହି ଓଡ଼ିଆମାନଙ୍କ ପକ୍ଷ ନେବାକୁ ଇଚ୍ଛା କରୁଛି । କେତେ ବଙ୍ଗଳା ଅସି ଓଡ଼ିଶାକୁ ଯେଉଁ ଅର୍ଥ ନେଉଅଛନ୍ତି, ଆମର ଏହି ଓଡ଼ିଆ ଭାଇମାନେ ଅନ୍ୟ କିଛି ଉପାୟରେ ନ ହେଉ ପଛକେ ମାଲିଗିରି, କୁଲିଗିରି, ବେହେରାଗିରି,

ଯୋଜାଗିର ବନ୍ଧ ହେଲେ ସେ ପଢ଼ଶାରୁ ଦଣ୍ଡ ଦେଶକୁ ଫେରନ୍ତ । ଶିକ୍ଷିତ ବ୍ୟକ୍ତିମାନଙ୍କ ଦ୍ୱାରା ତାହା ସୁଦ୍ଧା ହୋଇ ପାରୁ ନାହିଁ । କେତେକ ଶିକ୍ଷିତମାନେ ସ୍ୱଦେଶକୁ ଗଲେ କୁଳୀଅପଦାକୁ ଗନ୍ଧ ପର ବୋଧ କରନ୍ତି । ଅବଶ୍ୟ ଦୁଇ ଚାରିଗୋଟି ପ୍ରାତଃସ୍ମରଣୀୟ ଉଦାହରଣ ଏ ସମ୍ବନ୍ଧରେ ଦେଖାଯାଉଅଛନ୍ତି; କିନ୍ତୁ ତାଙ୍କୁ ଅନୁସରଣ କରୁଛି କିଏ ?

ପଣ୍ଡିତ ମହାଶୟ—କୁନ୍ଦନ ପୋପଟୀଙ୍କର ବଙ୍ଗଳା ବୋଲି ବଦଳି ଦେବାର ଅଷ୍ଟବୌଦ୍ଧିକ ବୋଲଟରୁ ଅଞ୍ଜା ଅଂହିବାରୁ ତାଙ୍କ ବୃଦ୍ଧ କିନକାମ୍ପ ନୟୁର୍ଣ୍ଣ ହେଲା । ପରନ୍ତୁ ଅମ୍ଭେ ଭଟକଚଣ୍ଡୀଙ୍କ ନିକଟରେ ନାଚିବ ଓ ହରିଭାଷଣୀ ହୋଇ ବଙ୍ଗଳା ପାଠ କଲାରୁ ପୋପଟୀ ରକ୍ଷିତ ହେଲେ ।

ଏହି ସମୟରେ ମାଷ୍ଟର ମହାଶୟ ନୂତନ ପଞ୍ଜିକା ହସ୍ତରେ ନେଇ ବସାରୁ ଫେରି ଆସିଲେ ଓ କହିଲେ ଏ ପାଞ୍ଜିରେ Many mistake (ଅନେକ ଭୁଲ) ଅଛି । ଏଠା ଦେଖନ୍ତୁ, ଅଜ Date (ତାରିଖ) ୧୪ ତାରିଖ, ଶୁକ୍ରବାର । କିନ୍ତୁ ଅଜି Saturday (ଶନିବାର) ବୋଲି ପାଞ୍ଜିରେ ଲେଖା ଅଛି ।

ସର୍ବଜ୍ଞ କହିଲେ, ଏ ୧୯୦୦ ସାଲର ପଞ୍ଜିକାରେ ବାସ୍ତବ ଭୁଲ ନାହିଁ, କିନ୍ତୁ ତାରଖ ଭୁଲ ଅଛି—ଅଜଣ ୧୪ ତାରିଖର ଦିନ ନ ଦେଖି ଶନିବାରର ଦିନ ଦେଖନ୍ତୁ । ଶନିବାର ଦିନ ୧୫ ତାରଖ ବୋଲି ଲେଖା ଅଛି । ତାହା କିନ୍ତୁ ୧୪ ତାରିଖ ହେବ । ପ୍ରତ୍ୟେକ ପାଞ୍ଜିରେ ଗଣିତ ଶୁଦ୍ଧିପତ୍ର ବାହାରିଥିଲା । ଏ ପାଞ୍ଜିରେ ଭୁଲ ହୋଇ ସେ ଶୁଦ୍ଧିପତ୍ର ଦିଆ ହୋଇ ନାହିଁ । ସାଧାରଣତଃ ପ୍ରତ୍ୟେକ ଚତୁର୍ଥ ବର୍ଷ (ଅର୍ଥାତ୍ ଯେଉଁ ବର୍ଷ ଚାରିରେ ହରିଲେ କିଛି ଅଂଶ ରହିବ ନାହିଁ ) Leap year (ଲିପ୍ ଇଅର) ନାମରେ ଖ୍ୟାତ । ସେ ବର୍ଷର ବିଶେଷତ୍ୱ ଏହି ଯେ ଅନ୍ୟ ବର୍ଷମାନଙ୍କରେ

ଫେବ୍ରୁଅରୀ ମାସ ଅଠେଇଶ ଦିନ, କିନ୍ତୁ ଲିପ୍ ଇଅରମାନଙ୍କରେ ଫେବ୍ରୁଅରୀ ଅଣତିରିଶ ଦିନ । ଏ ବର୍ଷ ନୂତନ ପଞ୍ଜିକାକାର ଏହି ନିୟମ ଅନୁସାରେ ଏ ବର୍ଷ ୧୯୦୦ ସାଲ ଥିବାରୁ ଏ ବର୍ଷର ଫେବ୍ରୁଅରୀ ମାସକୁ ଅଣତିରିଶ କରିଅଛନ୍ତି । କିନ୍ତୁ ତାହାଙ୍କୁ ଏହି ସାଧାରଣ ନିୟମର ବିଶେଷ ନିୟମ ଜଣା ନ ଥିଲା । ତାହା ଏହି :—ପ୍ରତ୍ୟେକ ଚତୁର୍ଥ ଶତାବ୍ଦିମାନଙ୍କ ଛଡ଼ା ଅନ୍ୟ ଶତାବ୍ଦିମାନଙ୍କ ଶେଷ ବର୍ଷ ଲିପ ଇଅର ହେବ ନାହିଁ । ଅର୍ଥାତ୍ ଯେଉଁ ଶତାବ୍ଦିମାନଙ୍କ ମୂଳ ଅଙ୍କକୁ ଚାରିରେ ହରିଲେ ଛିଣ୍ଡି ଯିବ, [ଯଥା ୨୦୦୦, ୨୪୦୦, ୧୬୦୦) ସେ ବର୍ଷମାନ ଲିପ ଇଅର ହେବ, କିନ୍ତୁ ଯେଉଁ ଶତାବ୍ଦିର ମୂଳ ଅଙ୍କମାନ ଚାରିରେ ହରିଲେ ଛିଣ୍ଡି ଯିବ ନାହିଁ, [ଯଥା ୧୮୦୦, ୧୭୦୦, ୧୯୦୦, ୨୨୦୦] ସେ ବର୍ଷମାନ ଲିପ୍ ଇଅର ହେବ ନାହିଁ ।

ପଣ୍ଡିତ ମହାଶୟ କହିଲେ—ଏହା ତ ଅତି ବିଷମ ସମସ୍ୟା । ଏହା ଆମ୍ଭର ଅବୋଧଗମ୍ୟ ।

ମର୍ଦ୍ଦରାଜ—ଏହା ଆପଣଙ୍କ ବୋଧଗମ୍ୟ କରିବାକୁ ହେଲେ ଅନେକ ବିଦେଶୀୟ ଐତିହାସିକ ବିଷୟ କହିବାକୁ ହେବ । ଏପରି ସ୍ଥଳରେ ଆପଣଙ୍କର ବୁଝିବାର କଷ୍ଟ ହେବ । ତେବେ ଏତିକି ମାତ୍ର ଜାଣନ୍ତୁ ଯେ ପ୍ରାଚୀନ ରୋମରେ ଚାନ୍ଦ୍ରମାନ ସୌରମାନ ମାସ ମଧ୍ୟରେ ସାମ୍ୟ ଘଟାଇବାକୁ ଯାଇ ଏ ଗଣ୍ଡଗୋଳର ପ୍ରାରମ୍ଭ । ରୋମକମାନଙ୍କ ସମୟରେ ଜୁଲିଅସ୍ ସିଜର Julius Caesar ପଞ୍ଜିକାରେ ସୌରମାନ ବର୍ଷ ଗଣନା ସମ୍ପୂର୍ଣ୍ଣରୂପେ ପ୍ରତିଷ୍ଠିତ କଲେ । ଏବ ସୌରମାନ ବର୍ଷ =୩୬୫.୨୪୨୨୮ ଦିନ । ଅର୍ଥାତ୍ ପ୍ରାୟ ୩୬୫ ଦିନ ୫ ଘଣ୍ଟା ୪୮ ମିନିଟ ୪୮ ସେକଣ୍ଡ । ପଞ୍ଜିକାରେ ବର୍ଷକୁ ୩୬୫ ଦିନ କଲେ ପ୍ରତ୍ୟେକ ବର୍ଷରେ ପ୍ରାୟ ୬ ଘଣ୍ଟା କରି ବଳି ପଡ଼େ । ଯେଣୁ କ୍ରମନ୍ତେ ଚାରି ବର୍ଷରେ ଏକା ୧ ଦିନ ବା ୨୪ ଘଣ୍ଟା ବଳି ପଡ଼ିବାରୁ ପ୍ରତ୍ୟେକ ୪ର୍ଥ ବର୍ଷ ଲିପ ଇଅର ଅର୍ଥାତ୍ ୩୬୬ ଦିନ କରିବାକୁ ହୁଏ । କିନ୍ତୁ

ହାସ୍ୟ କର ସୂବା ବର୍ଷକରେ ୧୧ ମିନଟ ଲେଖାଏଁ ବେଶି ରହିଯାଏ ଓ ତାହା ୧୦୦ ବର୍ଷରେ ପ୍ରାୟ ୧୨୦୦ ମିନଟ=ପ୍ରାୟ ୧ ଦିନ ବେଶି ରହିଯାଏ । ସେଥି ନିମନ୍ତେ ପ୍ରତ୍ୟେକ ଶତାବ୍ଦିର ଶେଷ ବର୍ଷ ଲିପ୍ ଇଅର ହୁଏ ନାହିଁ । କିନ୍ତୁ ୧ ଦିନ=୧୪୪୦ ମିନଟ । ୧୨୦୦ ମିନଟକୁ ୧ ଦିନ ଗଣନା କଲେ ଏକ ଶତାବ୍ଦିରେ ୨୪୦ ମିନଟ ଲେଖାଏଁ ଚାରି ଶତାବ୍ଦିରେ ୧୦୦୦ ମିନଟ ବା ଏକ ଦିନରୁ କିଛି କମ୍ ହୋଇ ପଡ଼େ । ଅତଏବ ସେ ଦିନଟା ପୂରଣ କରିବା ନିମନ୍ତେ ପ୍ରତ୍ୟେକ ୪ର୍ଥ ଶତାବ୍ଦିର ଶେଷ ବର୍ଷ ଲିପ୍ ଇଅର ହୁଏ । ଇଂଲଣ୍ଡର ରାଜା George II ଏହା ସ୍ଥିର କଲେ ।

ପଣ୍ଡିତ ମହାଶୟ କହିଲେ—'ଛକି ଜାନନ୍ତି ଗଦିଧାଃ'—ଏ ସଂଭୂତ ଘଟଣା ତାହା ଆମ୍ଭର ବୁଦ୍ଧିର ଅଜ୍ଞେୟ ।

ମର୍ଦ୍ଦରାଜ—ପଣ୍ଡିତ ମହାଶୟ ! ଅପଣ ଦଶମିକ ବା ଭଗ୍ନାଂଶ ଜାଣି ଥିଲେ ସହଜରେ ବୁଝି ପାରନ୍ତେ । (ପଣ୍ଡିତ ମହାଶୟ ତନା-ପିତାରମୂଢବାବତସ୍ତେ । ମର୍ଦ୍ଦରାଜ ମାଷ୍ଟର ମହାଶୟଙ୍କ ଆଡ଼କୁ ଲକ୍ଷ କରି କହିଲେ ଓ ଖଡ଼ ଗୋଟାଏ ଭୂମିରେ ଅଙ୍କ ଲେଖିଲେ ।)

ଏକ ସୌରମାନ ବର୍ଷ=୩୬୫.୨୪୨୨୧୮ ଦିନ $= ୩୬୫ + \frac{୧}{୪} - \frac{୩}{୪୦୦}$ ଦିନ ପ୍ରାୟ;

ଏ ଭଗ୍ନାଂଶରୁ ଦେଖାଯିବ ଯେ ପ୍ରତ୍ୟେକ ୪ର୍ଥ ବର୍ଷରେ ୩୬୫ ଦିନରେ ୧ ଦିନ ଯୋଗ କଲେ ଯାହା ହେବ, ତହିଁରୁ ପ୍ରତି ୪୦୦ ବର୍ଷରେ ୩ ଦିନ କାଟି ଦେଲେ ସୌରମାନ ହାରହାର ବର୍ଷ ଠିକ ହେବ । ଏହା ହେଲେ ପ୍ରାୟ ୪୦୦୦ ବର୍ଷରେ ୧ ଦିନ ବେଶି ପଡ଼ିଯିବ । କିନ୍ତୁ ୪୦୦୦ ବର୍ଷ ତୁଳନାରେ ୧ ଦିନ ଅତି ସାମାନ୍ୟ ଥିବାରୁ ତାହା କେହି ଧରନ୍ତି ନାହିଁ ।

ପଣ୍ଡିତ ମହାଶୟ—ଏତଦ୍ଭିନ୍ନ ମାନିପାରିବ ପ୍ରକାର ସ୍ଥିରିକି ନ ଦେଖିଲେ ଅମ୍ଭେ ଶପଥୋନ୍ମୁଖ। ବିଦେଶୀୟ କାଳଗଣନାପ୍ରଣାଳୀ ଯୋଗ କରି ଅସ୍ମଦ୍ଦେଶପ୍ରଚଳିତ କାଳଗଣନାପଦ୍ଧତ୍ୟନୁସରଣ କରିବାକୁ ପ୍ରୟାସୀ ହେଲେ ଅସ୍ମଦ୍ଦ୍ୱାରା ଅଦ୍ଭୁତ ହୁଅନ୍ତା।

ସର୍ଦ୍ଦାରଜୀ—ପଣ୍ଡିତ ମହାଶୟ, ସେ ବିଷୟରେ ମୋର ସନ୍ଦେହ ପ୍ରବେଶ ନାହିଁ । ସମ୍ବର ମିଶ୍ର କେତେ ଦିନ ଜ୍ୟୋତିଷ ଗ୍ରନ୍ଥ ଇତ୍ୟାଦି ଆଲୋଚନା କରିଥିଲେ । ତାଙ୍କଠାରୁ ଏ ବିଷୟରେ ବହୁ ଆଶା କରାଯାଇ ପାରେ । ଅମ୍ଭେମାନେ କେବଳ ଏତିକି ଜାଣୁ ଯେ ସ୍ଥାନବିଶେଷରେ ପ୍ରଚଳିତ ଅଭିନବ ବ୍ୟବସ୍ଥା ଅନୁସାରେ ଫସଲି, ଅମଲି ଓ ବିଲାୟତି ବର୍ଷ ଗଣନା କରିବାକୁ ହୁଏ ।

ସମ୍ବର ମିଶ୍ର—ପଞ୍ଜିକା ଇତ୍ୟାଦିରେ ଶାଳିବାହନ ଶକାବ୍ଦ ପ୍ରଚଳିତ ଓ ଜମିଦାରୀ ସିରସ୍ତାରେ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧିବୀରବର ପ୍ରତାପ ଶ୍ରୀ——ଦେବ ମହାରାଜାଙ୍କ ଅଙ୍କ ଓ ଉତ୍କଳାବ୍ଦ ପ୍ରଚଳିତ। ପଞ୍ଜିକାରେ ସୌରମାନ ଶକାବ୍ଦ; ଜମିଦାରୀ ସିରସ୍ତାରେ ସୌରମାନ ଅଙ୍କ ଓ ସାଲ। ସଂକ୍ରାନ୍ତି ଅନୁସାରେ ସୌରମାନ ମାସର ଗଣନା ଆରମ୍ଭ; ମହାବିଷୁବ ସଂକ୍ରାନ୍ତିଠାରୁ ଶକାବ୍ଦ ଓ ବଙ୍ଗାବ୍ଦର ଆରମ୍ଭ; ବିକ୍ରମାଦିତ୍ୟଙ୍କ ସମ୍ବତ୍ ଚାନ୍ଦ୍ରମାନ; ଚାନ୍ଦ୍ରମାନ ଅନୁସାରେ କୃଷ୍ଣ ପ୍ରତିପଦରେ ମାସାରମ୍ଭ ଓ ପୂର୍ଣ୍ଣିମାରେ ମାସ ଶେଷ ହୁଏ। ଜମିଦାରୀ ସିରସ୍ତାପ୍ରଚଳିତ ଅଙ୍କ ଯଦିଓ ସୌରମାନ, ତେବେ ଭାଦ୍ର ଶୁକ୍ଳ ଦ୍ୱାଦଶୀରେ (ଚାନ୍ଦ୍ରମାନ ଅନୁସାରେ) ଆରମ୍ଭ ହୁଏ। ଉତ୍କଳରେ ସଂକ୍ରାନ୍ତି ସଞ୍ଚାରର ପୂର୍ବ ଦିନ ମାସ ଶେଷ ହୁଏ, କିନ୍ତୁ ବଙ୍ଗଦେଶରେ ସଂକ୍ରାନ୍ତି ଦିନ ମାସ ଶେଷ ହୁଏ । ବିକ୍ରମାଦିତ୍ୟଙ୍କ ସମ୍ବତ୍ ଚୈତ୍ର ଶୁକ୍ଳ ପ୍ରତିପଦରେ ଆରମ୍ଭ ହୁଏ।

ଗଣନା ତିନି ପ୍ରକାର:—ସୌରମାନ, ଚାନ୍ଦ୍ରମାନ ଓ ନାକ୍ଷତ୍ରମାନ। ନାକ୍ଷତ୍ରମାନଗଣନାକ୍ରମେ ପରମାୟୁଗଣନା ଓ ଦଶାଗଣନା ହୁଏ।

ସାବନମାନ [ ସୂର୍ଯ୍ୟୋଦୟ ସଙ୍ଗେ ଯହିଁରେ ଦିନର ଆରମ୍ଭ ହୁଏ ], ଗଣନାକ୍ରମେ ଯଜ୍ଞ, ବେତନ, ଅଶୌଚ ଗଣନା ହୁଏ ।

ସୌରମାନଗଣନାକ୍ରମେ ପ୍ରାବୃଷ୍ଟି ଓ, ଦେବୋତ୍ଥାନ, ଯାତ୍ରା, ବିବାହ ହୁଏ । ଚାନ୍ଦ୍ରମାନଗଣନା ଦୁଇ ପ୍ରକାର—ମୁଖ୍ୟ ଓ ଗୌଣ ।

ମୁଖ୍ୟ ଚାନ୍ଦ୍ରମାନରେ ପ୍ରଥମ ଚନ୍ଦ୍ରଦର୍ଶନଠାରୁ ମାସାରମ୍ଭ ହୁଏ । ମୁସଲମାନମାନେ ମୁଖ୍ୟ ଚାନ୍ଦ୍ରମାନ ଅନୁସାରେ ହିଜର ସାଲର ମାସ ଗଣନା କରନ୍ତି ।

ଗୌଣ ଚାନ୍ଦ୍ରମାନ [ଯାହା କି ପ୍ରତିପଦରେ ଆରମ୍ଭ ହୋଇ ପୂର୍ଣ୍ଣିମା କିମ୍ବା ଅମାବାସ୍ୟାରେ ଶେଷ ହୁଏ] ଗଣନାକ୍ରମେ ବ୍ରତ ଉପବାସାଦି ଓ ଶ୍ରାଦ୍ଧ କରିବାକୁ ହୁଏ ।

ପଣ୍ଡିତ ମହାଶୟ କହିଲେ—ସୌରମାନ ବର୍ଷକୁ ୩୬୫ ଦିନ ୧୫ ଦଣ୍ଡ ୩୦ ପଳ ୨୨୪ ବିପଳ ଓ ଚାନ୍ଦ୍ରମାନ ବର୍ଷକୁ ୩୫୪ ଦିନ ୨୨ ଦଣ୍ଡ ୧ ପଳ । ସୌରମାନ ଓ ଚାନ୍ଦ୍ରମାନ ବର୍ଷ ମଧ୍ୟରେ ୧୦ ଦିନ ୫୩ ଦଣ୍ଡ ୨୯ ପଳ ୨୨୪ ବିପଳ ପ୍ରଭେଦ ।

ମଦ୍ଧିସ୍ୱଂକ—ପଣ୍ଡିତ ମହାଶୟ ! ପଳ ବିପଳ ଆମ୍ଭେମାନେ ବୁଝି ପାରୁ ନାହୁଁ ।

ପଣ୍ଡିତ ମହାଶୟ—'ଶଠେ ଶାଠ୍ୟଂ ସମାଚରେତ୍ ।' ତୁମ୍ଭେ ପର ଅମ୍ଭଙ୍କୁ ଦଶମ ଭଗ୍ନାଂଶୋଦ୍ଧାରଦ୍ୱାରା ପରାସ୍ତ କରୁଥିଲ; ଅମ୍ଭ ବେଳକୁ ଅମ୍ଭେ ଛାଡ଼ିବୁଁ କାହିଁ ? ତୁମ୍ଭେ ବଧୀର ସମୀପରେ ମୂଳକ ଚର୍ବଣ କରୁଥିଲ, ଅମ୍ଭେ ଅନ୍ଧ ସମକ୍ଷରେ ପ୍ରଦୀପ ସ୍ଥାପନ କଲୁଁ, 'ରଜ ଛା ପରିବେଦନା'। ସୌରମାନ ଓ ଚାନ୍ଦ୍ରମାନ ବର୍ଷ ମଧ୍ୟରେ ଯେ ୧୦ ଦିନ ୫୩ ଦଣ୍ଡ ୨୯ ପଳ ୨୨୪ ବିପଳ ପ୍ରଭେଦ ହୁଏ, ତାହାର ଏକୀକରଣାର୍ଥେ ଚାନ୍ଦ୍ରମାନ ୨ ବର୍ଷ ୮ ମାସ ୧୫ ଦିନରେ ଗୋଟିଏ ମଳମାସର ଗଣନା ସୃଷ୍ଟି କରିବାକୁ ହୋଇଅଛି । ଏ ଛଡ଼ା ଏ ସ୍ଥଳରେ ଅମ୍ଭର ବକ୍ତବ୍ୟ ଏହି ଯେ ପୁରୁଷୋତ୍ତମ ସଚ୍ଚାଙ୍କ ଅଙ୍କଗଣନାରେ

୧ମ, ୨ୟ, ୭ମ, ୧୭ଶ, ୨୭ଶ, ୩୭ଶ, ୪୭ଶ, ଇତ୍ୟାଦ ଓ ୨୦ଶ, ୩୦ଶ, ୪୦ଶ, ୫୦ଶ, ଇତ୍ୟାଦ ଅଙ୍କମାନ ଗଣନା କରିବା ଅପ୍ରଚଳନ୍ତ, ଅତଏବ ପରିହାର୍ଯ୍ୟ—କେବଳ ୧୦ମ ଅଙ୍କଟା ଗଣିତ ହେବ ।

ଏହି ସମୟରେ ମହମ୍ମଦ ଆସି ପହଞ୍ଚିଲା ।

ମାଷ୍ଟର ମହାଶୟ—ମୁସଲମାନମାନଙ୍କ year (ବର୍ଷ) ଓ month (ମାସ) କପର count (ଗଣନା) ହୁଏ, ତାହା ମୁଁ understand କରି (ବୁଝି) ପାରଲି ନାହିଁ ।

ଗମ୍ଭର ସିଂ—ମୁସଲମାନଙ୍କ ମାସ ପ୍ରଥମ ଚନ୍ଦ୍ରଦର୍ଶନ ଦିନ ସନ୍ଧ୍ୟାରୁ ଆରମ୍ଭ ହୁଏ ।

ମହମ୍ମଦ୍ କହିଲା—ଆରେ ସେ କଥା କଣ କହୁଛ ? ପଠାଣଙ୍କର ତ ସବୁ ଓଲଟା । ଆମର ସକାଳୁ ମାସ ଗଣତ ହୁଏ, ତାଙ୍କର ସନ୍ଧ୍ୟାରୁ ମାସ ଗଣତ । ଆମର କଦଳୀପତ୍ର ପେଟରେ ଭାତ ଖାଉଁ, ପଠାଣ ପତ୍ରର ପିଠି ବାଗରେ ଭାତ ଖାନ୍ତି । ଆମେ ବୋଦା ପକେଇଲା ବେଳେ ବେକ ଉପରେ ହାଣୁଁ, ପଠାଣ ତଳିରେ ହଲାଲ କରନ୍ତି । ଆମେ ଘର କାନ ଖୋସି ଲୁଗା ପିନ୍ଧୁଁ, ପଠାଣଙ୍କର ଘର କାନ୍ଧ ପିଟା । ଆମେ ଦାଢ଼ି ଖିଅର କରୁଁ, ପଠାଣ ଦାଢ଼ି ରଖନ୍ତି । ଆମେ ବସି କରି ପୂଜା କରୁଁ, ପଠାଣ ଠିଆ ହୋଇ ଘାଡ଼େଆ କରନ୍ତି । ଆମେ ପୂର୍ବକୁ ମୁହଁ କରି ପୂଜା କରୁଁ; ପଠାଣ ପଶ୍ଚିମକୁ ମୁହଁ କରି ନମାଜ ପଢ଼ନ୍ତି । ଆମେ ପଚିଶା କରି ପାଣି ପିଉଁ, ପଠାଣ ଟେକା ପିଅନ୍ତି । ଆମର ହ' ହାତେଆ ନମସ୍କାର, ତାଙ୍କର ଏକହାତେଆ ସଲାମ । ଆମେ ବାଁ ଅଡ଼ୁ ଡାହାଣକୁ ଅକ୍ଷର ଲେଖୁଁ, ତାଙ୍କର ଡାହାଣରୁ ବାଁକୁ ହରପ ଲେଖନ୍ତି । ଆମ ମୂଣ୍ଡ ପଛଅଡ଼େ ଖୋସିବ ବାଳ, ତାଙ୍କର ମୁହଁ ସାମ୍ନାରେ ଖୋସିବ ଚୂଳ ।

ଅଙ୍କ ନୂଙ୍ଗୀରେ ବର୍ଷ ଗଣନା ରୀତ ଅମ୍ଭମାନଙ୍କ ମନରେ ଦୁର୍ଜ୍ଞେୟ ହୋଇ ଜାତ ହୋଇଥିବାରୁ ଓ ମହମ୍ମଦ ଗ୍ରାମବାସୀଙ୍କ ଦ୍ୱାରା ଅବରେ ମଣ୍ଡିତ ହୋଇ

ଥିବାରୁ ମନ୍ତ୍ରିବରଙ୍କର ଭଜନା-ଲହରି ଅମ୍ଭମାନଙ୍କ ହୃଦୟ-ଦର୍ପଣରେ ସମ୍ୟକ୍ ପ୍ରତିଫଳିତ ହେଲା ନାହିଁ ଓ ଅନେକ ରାତି ହେବାରୁ ଅମ୍ଭେ-ମାନେ ବିଦାୟ ନେଲୁଁ ।

ଗଲା ବେଳେ ମୁଁ ମନ୍ତ୍ରୀଙ୍କୁ କହିଲି, ଟୁଙ୍ଗୀରେ ବସି କ୍ରମଶଃ ଡ଼ିକି-ଶାଳରେ ଢେଙ୍କାନାଳର ଚନ୍ଦ୍ରା ବଢ଼ିବାକୁ ଲାଗିଲାଣି । ଏପରି ଅଗାଧ ଓ ଅବୋଧଗମ୍ୟ ବିଷୟମାନଙ୍କ ଚର୍ଚ୍ଚା ବଢ଼ିଲେ ଦୁର୍ମୁଖଶର୍ମା ଟୁଙ୍ଗୀର ସଭ୍ୟାଧିକାରରୁ ଇସ୍ତଫା ଦେବେ । ଏଣିକି ଟୁଙ୍ଗୀକୁ କେହି ଆସିବାକୁ ସଜ୍ଜ ହେବେ ନାହିଁ ।

ମଧେଶ୍ବରକେ:—ଯେଉଁ ଦଳ ଯେପରି ଧରଣର ଲୋକ ଥିବେ, ସେ ଦଳ ସେହିପରି ଧରଣର ବିଷୟମାନ ଚର୍ଚ୍ଚା କଲେ ଗଣ୍ଡି ହେବ ନାହିଁ । ଜମାଦାରେ ବା ମୁକ୍ତ୍ୟାରେ ଥିଲେ ତ ଏତେ କଥା ପଡ଼ି ନ ଥାନ୍ତା । (ମନ୍ତ୍ରିବରଙ୍କୁ କହିଲେ) ଆମର ଓଲଟା ବ ମୂର୍ଖମାନଙ୍କର ଓଲଟା, "ଏ କଥା କିପରି ଜାଣିଲୁ ? ଡ଼ାଙ୍ଗାରେ କି ରେଳରେ ଗଲାବେଳେ ପାଖର ଗଛ, ଘର, ଦୁଆର ସବୁ ଦଉଡ଼ିଲା ପରି ଜଣାଯାଏ । ଆପଣା ମୁଣ୍ଡ ବୁଲେଇଲେ ଘରଦ୍ୱାର ସବୁ ଘାଣ୍ଟିରେ ଗୋଟିଲା ପରି ଜଣାଯାଏ ନାହିଁକି ?



## ନବମ ସନ୍ଧ୍ୟା ।

———

ପଣ୍ଡିତ ମହାଶୟ ଅଜ ପ୍ରହାସ୍ୟବଦନରେ ଟୁଙ୍କାରେ ଉପସ୍ଥିତ । ପଣ୍ଡିତ ମହାଶୟ—'ଯୁଷ୍ମାଙ୍କର ଅନୁରୋଧପରବଶ ହୋଇ ଅମ୍ଭେ କୌମୋଦୀପୂର୍ଣ୍ଣିମାନ୍ତର୍ଣ ପଦ୍ୟରଚନା ସ୍ଥଗିତ ରଖି ରଘୁବଂଶ ଅନୁବାଦ-ବାସନାବାନ୍ ହୋଇଅଛୁଁ । ଭବ୍ୟମାନଙ୍କୁ ତାହା ଉତ୍କୃଷ୍ଟ ବୋଧ ନ ହେଲେହେଁ ପରନ୍ତୁ ଏତଦ୍ଭୂତ ବାସନା ଉପେକ୍ଷଣୀୟ ନୁହେ ।'

ଅମ୍ଭେମାନେ ଦେଖିଲୁଁ ପଣ୍ଡିତମହାଶୟଙ୍କ କଥାପ୍ରବାହ ପରିବର୍ତ୍ତିତ ହେବା ଦୁର୍ଲଭ । କିନ୍ତୁ ପଣ୍ଡିତ ମହାଶୟଙ୍କ ଅନୁବାଦଟି କିପରି ହୋଇ-ଅଛି, ଶୁଣିବା ଉତ୍କଣ୍ଠାରେ ପଣ୍ଡିତ ମହାଶୟଙ୍କ ଆଡ଼କୁ ଚାହିଁ ରହିଲୁଁ ଓ ପଣ୍ଡିତ ମହାଶୟ ଝଟ୍ଟେ ଖାଲିପତ୍ର କାଢ଼ି ଆରମ୍ଭ କଲେ—

୧

ଗତ ରବି; ଚନ୍ଦ୍ର-କରେ ବାସନା ସଞ୍ଚିତ;
ପଦ୍ମଶୂନ୍ୟ ଜଳାଶୟ ତାପ୍ରୁଁ ଅବିରତ;
ଦିବା ଅବସାନେ ପୁନଃ ହୋମ ଉପଶାନ୍ତ—
କଦାଚ ସମ୍ପ୍ରତି, ପ୍ରିୟେ ! ହେମନ୍ତ ଆଗତ ।

୨

ନିଶା ( ଯହିଁ ଚନ୍ଦ୍ରକରେ ତମ ପରାହତ ),
କେଉଁ ସ୍ଥାନେ ରମ୍ୟ ଜଳ-ସଦନ ନିର୍ମିତ,
କାନ୍ତାବକ୍ଷ ମଣି, ଅଙ୍ଗେ ଚନ୍ଦନ ଲେପିତ,—
ଶୀତେ ଏବେ ଏମାନ ନର ଆଦୃତ ।

୩

ସୁବାସିତ ହର୍ମ୍ୟତଳେ ଅତି ଜନନୀୟ,
ପ୍ରିୟାମୁଖ-ମରୁତରେ କମ୍ପିତ ପାନୀୟ,
କାଣ୍ଡାଗ୍ନ ( ବଳାହିର ସ୍ରୁତଶ ଅମିୟ ),—
ଏହିମାନଙ୍କରେ ନାହିଁ ରଖିଥାଏ ଲୟ ।

୪

ସୁବସନ-ମେଖଳାରେ ନିତମ୍ବ ଜଡ଼ିତ,—
ହାରଶୋଭି ପୟୋଧର ଚନ୍ଦନେ ଚର୍ଚ୍ଚିତ,—
ନାନାଜାତ ବାସେ କେଶଯୂଥ ସୁବାସିତ,—
କର ନାହିଁ ରସିକଙ୍କୁ କରଇ ମୁଦିତ ।

୫

ଗାଢ଼ ଅଲକ୍ତକ-ରସ-ରାଗରେ ଲୋହିତ
ନୂପୁର-ଯୁକ୍ତ ପଦ୍ମରେ ନିତମ୍ବିନୀ-ଯୂଥ
ପଦକ୍ଷେପ କାଳେ କରି କଳହଂସ-ରୁତ
କରନ୍ତି ଜନମାନସ ସତତ ମୋହିତ ।

୬

ଚନ୍ଦନ-ପଙ୍କେ ଶୀତଳ ପୀନ ପୟୋଧର
( ତୁଷାର-ଧବଳ, ପୁଣି ଲମ୍ବେ ଯହିଁ ହାର ),
କନକମେଖଳାବାନ୍ଧି ନିତମ୍ବର ଧାର,
କାହା ମନେ ନ କରଇ ଉତ୍କଣ୍ଠା ଅପାର ?

ପଣ୍ଡିତ ମହାଶୟଙ୍କର ଏହି ଛଟି ଶ୍ଳୋକରେ ତାଳପତ୍ର ଖଣ୍ଡି ଶେଷ ହେଲା ।

ଶ୍ୟାମସୁନ୍ଦର ବାବୁ—'ପଣ୍ଡିତ ମହାଶୟ ! ଅନୁବାଦଟିରେ ସଂସ୍କୃତ-ରଚନା-ଛଟାର ମାତ୍ରାଟା ଟିକିଏ ବେଶି ହୋଇଅଛି ।'

ପଣ୍ଡିତମହାଶୟ—'ଋତୁସଂହାରମୂଳପଦ୍ୟ ଏ ଅନୁବାଦକୁ ତୁଳନା କଲେ ଅସ୍ମଦୀୟ କୃତିତ୍ୱ ଜ୍ଞାତସାରରେ ଆସିବ । ପ୍ରତ୍ୟେକ ରେଖାରୂଢ଼ ଭାବ ପ୍ରତ୍ୟେକ ରେଖାରେ ସନ୍ନିବେଶିତ କରିବା ପକ୍ଷେ ଆମ୍ଭେ ଯତ୍ପରୋନାସ୍ତି ଯତ୍ନୀ ହୋଇଅଛୁଁ ।

ଆମ୍ଭେମାନେ ବୁଝିଲୁଁ ଯେ ବୋଧ ହୁଏ ପଣ୍ଡିତ ମହାଶୟ ଏଥି ମଧ୍ୟରେ ଟିକିଏ ଶିକ୍ଷାଲାଭ କରିଅଛନ୍ତି । 'କୌମାରୀପୂର୍ଣ୍ଣିମା' ପରୁ

ରଚନା-ଶୃଙ୍ଖଳା ପରିତ୍ୟାଗ କରି ଆପାତତଃ ଶୃଙ୍ଖଳାନୁବାଦରେ ବ୍ରତୀ ହେବା ପଣ୍ଡିତ ମହାଶୟଙ୍କର ବୃଦ୍ଧ ବୟସ ପକ୍ଷରେ ଯଥେଷ୍ଟ ପ୍ରଶଂସାପତ୍ର । ତେବେ ପଣ୍ଡିତ ମହାଶୟଙ୍କ କଲ ଉପଯୁକ୍ତ ପଥରେ ଚଳିଲେ ବେଶ୍ ଚଳନ୍ତା; କିନ୍ତୁ 'ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ' । ଦେଖିଲୁଁ ଯେ କବିଯଶଃପ୍ରାର୍ଥୀ ଅନେକ ବ୍ୟକ୍ତିଙ୍କ ଅନୁବାଦ ଅପେକ୍ଷା ପଣ୍ଡିତ ମହାଶୟଙ୍କ ଅନୁବାଦ ନ୍ୟୂନକଳ୍ପ ନୁହେ ।

ମର୍ଦ୍ଦରାଜ—'ପଣ୍ଡିତ ମହାଶୟ, ଏ ଅନୁବାଦରେ ଆପଣଙ୍କୁ 'ଅପ୍ରିୟ ସତ୍ୟ' ଶୁଣିବାକୁ ହେବ ନାହିଁ । ଚେଷ୍ଟା କରି ଏ ଅନୁବାଦଟି ସମ୍ପୂର୍ଣ୍ଣ କରନ୍ତୁ । ଅତ୍ୟୁକ୍ତିପୂର୍ଣ୍ଣ ପ୍ରଶଂସାରେ ଆମ୍ଭେମାନେ ସିଦ୍ଧହସ୍ତ ନୋହୁଁ । କିନ୍ତୁ ଆପଣ ଏତିକି ଜାଣନ୍ତୁ ଯେ ଆପଣଙ୍କ ପ୍ରଥମ ଚେଷ୍ଟା କେତେକ ପରିମାଣରେ ସଫଳ ହୋଇଛି ପରି ବୋଧ ହୁଏ ।

ମହାଜନସାହୁ ।—ପାଠ ପଢ଼ି ରୋଜଗାର ନ କଲେ କଣ ହେଲା ? ଯୋଉଁ ବହି ବେଶି ବିକିଲେ ଦି ପଇସା ମିଳିବ, ସେ କଥା କର । ଏଥିରୁ ଚୂଡ଼ାଏ କଲେ କି ଲାଭ ?

ମାଷ୍ଟର ମହାଶୟ—ପଣ୍ଡିତ ମହାଶୟଙ୍କ ପଦ୍ୟଟି ଉତ୍କୃଷ୍ଟ—(ପଣ୍ଡିତ ମହାଶୟ ବର୍ତ୍ତମାନ=ଗନ୍ଧକ, ମାଷ୍ଟରଙ୍କଦ୍ୱାରା 'ଉତ୍କୃଷ୍ଟ' ଶବ୍ଦ ବ୍ୟବହାର =ଯୋଗ, ଏପରି ସ୍ଥଳରେ ଆମ୍ଭେମାନେ ଦେଖିଲୁଁ ଯେ ମାଷ୍ଟରଙ୍କ-ଠାରୁ ଆଉ ପଦେ ଅଧେ କଡ଼ା କଥା=ଜ୍ୱଳନ୍ତ ଅଙ୍ଗାରଚୂର୍ଣ୍ଣ ଏଥିରେ ମିଶିଲେ ସର୍ବନାଶ । ପଣ୍ଡିତଙ୍କ ଭାବଭଙ୍ଗୀ ଦେଖି କୁମାରସମ୍ଭବର କାମଦାହୀ ମହାଦେବଙ୍କ ଚିତ୍ରଟି ମନେ ପଡ଼ିଗଲା । ମାଷ୍ଟର ମହାଶୟ ମଧ୍ୟ ପଣ୍ଡିତଙ୍କ ଭାବଭଙ୍ଗୀ ବେଶ୍ ବୁଝି ପାରିଲେ । ଅସାବଧାନତାପ୍ରଯୁକ୍ତ ବ୍ୟବହୃତ ଶବ୍ଦଟି ହଠାତ୍ ବଦଳାଇ ଦେଲେ; ରକ୍ଷା, ନଇଲେ ଆମ୍ଭ-ମାନଙ୍କର ସବୁ ସରସ ଭାବ ବିରସ ହୋଇ ଯାଇ ଥାନ୍ତା ।)—ଓଃ ସମ—ଉତ୍କୃଷ୍ଟ ହୋଇଅଛି, ସନ୍ଦେହ ନାହିଁ । ( ପଣ୍ଡିତଙ୍କ ଚକ୍ଷୁର

ଉଲ୍ଲିଖିତ ପ୍ରାୟ ୩ ସେକଣ୍ଡ(=୨୪ ବିପଳ) ମଧ୍ୟରେ ପରିବର୍ତ୍ତିତ ହୋଇ ଗଲା । ଗୋଟାଏ ଅକ୍ଷର ପରିବର୍ତ୍ତନର ଏତେ ମାହାତ୍ମ୍ୟ ! ପଣ୍ଡିତମହାଶୟ 'କବୀନ ନବଦୁର୍ଗବ ପ୍ରାପ' ଗାହୁଁଥିଲେ (ମାଷ୍ଟର ମହାଶୟ ବହୁତାଲୁ ଲାଗିଲେ ) ଏ ବର୍ଷ ପୂଜା ଉପଲକ୍ଷରେ ଗୋଟିଏ Noвodrama (ନାଟକୋପନ୍ୟାସ)compoje ( ରଚନା ) କରିଥିଲେ । (ଏତେ ଦିନେ ମାଷ୍ଟର ମହାଶୟ ଇଂରାଜୀ ଭାଷାରେ ଗୋଟିଏ ଅବଶ୍ୟକ ଶବ୍ଦ ଭର୍ତ୍ତି କଲେ ! ) ଏ work ( ପୁସ୍ତକ )କୁ compoje ( ପ୍ରକୃତ ଶବ୍ଦ compose = ରଚନା; ମାଷ୍ଟରେ 'S'କୁ ସାଧାରଣତଃ 'ଜ' ବୋଲି ଉଚ୍ଚାରଣ କରନ୍ତି, ଏହା ଯର୍ତ୍ତବ୍ୟ ନୁହେ ) କରିବାକୁ ମତେ ଢ଼େର୍ labour ( ପରିଶ୍ରମ) ଲାଗିଛି । ମୋ'ର English poem ( ଇଂରାଜୀ ପଦ୍ୟ )କୁ blame (ନିନ୍ଦା) କରୁଥିଲ ! ବର୍ତ୍ତମାନ lo ! hark! smell ! touch ! and taste ! ( ଗନ୍ଧ, ଶୁଣ, ଶୁଁଘ, ଛୁଅଁ ଏବଂ ଚାଖ ) ଏହା କହି ବଡ଼ ଏକ ପରୀକ୍ଷାକାଗଜ ବାହାର କଲେ । (ପରୀକ୍ଷା କାଗଜର ଅଲେଖା ପାଖରେ ଲେଖି ମାଷ୍ଟର ମହାଶୟ ବ୍ୟୟକୁଣ୍ଠତାର ପରାକାଷ୍ଠା ଦେଖାଇ ଥାନ୍ତି । ) ମାଷ୍ଟର ମହାଶୟ ତାଙ୍କ Noвodrama ଆରମ୍ଭ କଲେ :—

ଦେବାଙ୍କର ସ୍ୱର୍ଗ-ପ୍ରତ୍ୟାଗମନ ବା 'ଯେଝା ଘଡିକ ଯେ' ।

Jejha Ghadika Jay

ପ୍ରଥମ ଅଙ୍କ । ପ୍ରଥମ ଦୃଶ୍ୟ ।

ଅଣିନ ଶୁକ୍ଳ ଚତୁର୍ଦ୍ଦଶୀ ବେଳ ଦୁଇ ଘଡି ଅଛି, ତପୋବନର Cook Kelvy ଘଡି ଟଂ ଟଂ କରି ବାଜିଲା । ସ୍ଥାନ—କୈଳାଶପୁର, ଭୋଳାନାଥଙ୍କ ତପୋବନ-ଟୁଙ୍ଗୀ; ଟୁଙ୍ଗୀଦ୍ୱାରରେ ସଙ୍ଗୀନହସ୍ତରେ ଭୃଙ୍ଗୀ ଦଣ୍ଡାୟମାନ, ଟୁଙ୍ଗୀମଧ୍ୟରେ ଭୋଳାନାଥ ଖଣ୍ଡିଏ canvas chair (ଘାଲଦାଉକି)ରେ ଅସୀନ; ହାତରେ ଗୋଟିଏ ପାଲିସକରା ହାଡ-ହାଣ୍ଡିର ସ୍ପ୍ରିଙ୍ଗର ମାଟିକ ଜପମାଳା, ନାକରେ କଳା ଅଗ୍ରଭାଗ

pipe (ନଳୀ)ରେ ଗଞ୍ଜା ଭର୍ତ୍ତି କରୁଅଛୁ। ଏହି ସମୟରେ ସନ୍ନ୍ୟାସ ଭଉ ଭୃଙ୍ଗୀ ମହାଦେବଙ୍କ ହସ୍ତରେ ଖଣ୍ଡେ visiting card (ଦର୍ଶନ ପତ୍ରିକା) ପ୍ରଦାନ କଲା। ଭୋଲାନାଥ—(visiting card ପଢ଼ି ଟିକିଏ ଉତ୍ତ୍ୟକ୍ତ ହୋଇ)—ମେମ୍ ସାହେବ୍‌କୋ ହାମ୍‌ରା ସଲାମ ବୋଲୋ। ହାମ୍ ଯାତେହେଁ, ଖାହାଉମେ ବଇଠ୍‌ନେ ଭଲ୍‌ଡ ଦୋ; ଦୋ ଦସ୍ ମିନଟ୍‌ମେ ହମ୍ ମଲାକାତ୍ କରେଙ୍ଗେ—(ଭୃଙ୍ଗୀ ଏକ ସଲାମ କରି ପ୍ରସ୍ଥାନ) କଲୀ! ଫୁର୍ତ୍ତି କରୋ। ମେମ୍ ସାହେବ୍ ଅଭି ଆଏଙ୍ଗେ। ଗଞ୍ଜା ଦେଖ୍‌କେ ଭଡ଼୍‌କା ଗରମ୍ ହୋଏଙ୍ଗେ।

[Foot-note—ପାଠକେ! ମହାଦେବ ଅଗର ମହାଦେବ ନୁହନ୍ତି। ଯସ୍ମିନ୍ ଯସ୍ମିନ୍ ଚ୍ଛନ୍ଦା, ତସ୍ମିନ୍ ତସ୍ମିନ୍ ଯିନ୍; ଆପଣମାନେ କୁମାର-ସମ୍ଭବ, ମହାଭାରତ, ଶିବପୁରାଣ ଇତ୍ୟାଦିରେ ମହାଦେବଙ୍କର ଯେଉଁ ବର୍ଣ୍ଣନା ଶୁଣିଛନ୍ତି, ସେଗୁଡ଼ିକ ମସ୍ତିଷ୍କର ଗୋଟିଏ କୋମଳରେ ଗନ୍ଧ ପକାଇ ଏ Novodrama (ନାଟକୋପନ୍ୟାସ)ଟି ଶେଷ କରିବାଯାଏ ରଖି ଦଅନ୍ତୁ। ନଚେତ୍ ମତେ Mad [ବାତୁଳ] ବୋଲି କହିବେ। ମହାଦେବଙ୍କର ଜଟା, ବିଭୂତି, ବ୍ୟାଘ୍ରଚର୍ମ, କାଷ୍ଠାସନ, ସର୍ପ ଇତ୍ୟାଦି ପରିବର୍ତ୍ତେ ଯଥାକ୍ରମେ ଚଇତନ ଚୁଟକି ଓ ଟେରି, ପାଉଡ଼ରର powder, ସାମଏ ଚର୍ମ (chamois leather), କାନ୍‌ଭସ୍ ଚଉକି (canvas chair), ଗଳାବନ୍ଧ (neck-tie) ପ୍ରଭୃତି ହେଲାଣି। କୈଳାସରେ ମହା-ଦେବଙ୍କ କୋଠିରୁ ଟପ୍‌ଫଲ୍ୟାଟୀର ୧୦୦ ଗଜ ଉପାନ୍ତ। ଉପ୍‌ଫଲ୍ୟାଟୀରେ ଭୋଳାନାଥଙ୍କ ଖାସ୍ କାମରା। ବାହାରେ ପ୍ରକାଣ୍ଡ କାଳରେ ପ୍ରସ୍ତର ସମ୍ମୁଖ ଅକ୍ଷରରେ No admission [ପ୍ରବେଶ ନିଷେଧ] ବିଜ୍ଞାପନ ମରା ଅଛି। ପାର୍ବତୀଙ୍କ ସଙ୍ଗେ ଏକାକୀ ଥିଲେ ଓଡ଼ିଆରେ କଥାବାର୍ତ୍ତା, କିନ୍ତୁ ଅନ୍ୟ ସମୟରେ ଆଧୁନିକ ସଭ୍ୟ ଅନୁକରଣରେ ହିନ୍ଦୀ ଓ ଇଂରେଜୀ କଥାବାର୍ତ୍ତା ଓ Correspondence [ପତ୍ରଲେଖା]। ସେଠାରେ ସବୁ ଆଧୁନିକ କାଇଦା ଚଳିଲାଣି, କିନ୍ତୁ ଗଞ୍ଜା ପରିବର୍ତ୍ତେ Birds-eye ଚୁରଟ୍ ଚଳିବା କଥା ହୁଅଛି।]

ନନ୍ଦୀ—[ମହାଦେବଙ୍କ ମୁଖରେ ଗଞ୍ଜା pipe ପ୍ରଦାନ ଓ pipe ରେ ମୁଖାଗ୍ନି ଦାନ]—ହଜୁର ! ହାମ୍ ଶୁନ୍‌ତେହେଁ ମେମ୍‌ସାହେବ୍ ହଜୁରକା ଉପର୍ ବଡ଼ା ଖପ୍ପା ହୁଏ ହେଁ । ଅଜ୍ ଫଜ୍‌ର ହୁକାଅସେ ଭାର୍‌ଖବର୍ ଭେଜ୍‌କେଥେ ଯୋ ହାମ୍‌କୁ ବହୁତ ଶରମ୍ ହୁଅ—ହାମ୍‌ସେ ବାସ୍ତେ ଏକ୍ ଢପ୍ ହାପି ତଯ୍ୟାର୍ କର୍‌ତେ ରଖ୍ଖୋ । ହାମ୍ ଅବ୍ବ ହୋସ୍‌ପାତାଲ୍‌ମେ ପଡ଼ାହୁଁ । ଘଣ୍ଟା ସାଡ଼େ ଗ୍ୟାର୍ ବଜେ କୈଲାସ୍‌ଜନ୍‌ପର୍ ଯୋଡ ଭେଜୋ । ହାମ୍ ଡାକ୍ ଗାଡମେ ପହୁଞ୍ଚେଙ୍ଗେ ।

[Foot-note—ପାଠକେ ! ସବ କ ମିଛ ବୁଝିଲେ,ତ । ମହାଦେବଙ୍କ ମହଲରେ Train [ ରେଲ୍ ] ଅଛି; ଯୋଡ ଗାଡ ଅଛି, ଛାପି ଅଛି । ନନ୍ଦୀର କଥା ଶୁଣି ମହାଦେବଙ୍କର କର୍ଣ୍ଣ ଛଡ ଗଲା । କଣ କରାଯାଏ ? ଅଠ ଦନ ବଚ୍ଛେଦ ପରେ ମିଳନ । ତା ଉପରେ ଏ ଦଣ୍ଡ । ମହାଦେବ ବ୍ୟସ୍ତ ସମସ୍ତ ହୋଇ ହନୀ ଭାଷା ଭୁଲି ଗଲେ ।]

ମହାଦେବ—ଅରେ ବାବା ନନ୍ଦୀ । ଅମ କଥା ଧରନା । ମୁଁ ପରା ଜାଣେ । ଯେ ଗଲା ଦନ ଅାଗରୁ ମୋ ଚରଣରେ ଗୋଟାଏ ଝୁଂଟିପିଟି ପଡ ଥିଲା । ୟା ବାବା ! ତାଙ୍କ ଢଅଁଲେଇ ସଅଁଲେଇ ଭାବ ଅଣ; ସେ ତ ଏହନ୍ଷଣି ଯଯାର ରଖିବ ନାହିଁ । ସଂସାରରେ ଏଥର ଭାରୁ କଷ୍ଟ ପାଉଛନ୍ତି । ଗତ ୨୪ ତାରିଖ second delivery ରେ ଅମେ ଦେବୀଙ୍କ କଷ୍ଟର ଅଭାସ ପାଇଥିଲୁଁ ।

[ ନନ୍ଦୀର ପ୍ରସ୍ଥାନ, ମହାଦେବଙ୍କ ଟେନ୍ଶ୍ନ ଦରଜରେ pipe ଇତ୍ୟାଦ ଶୀଘ୍ର ଲୁଗ୍‌ଇ ଦେଇ ନକଟକୁ ଖଣ୍ଡେ bent wood chair (ଏକ-ଜାତୀୟ ସୁନ୍ଦର ଚଉକ) ଅନୟନ; ନନ୍ଦୀର ପାର୍ବତୀଙ୍କ ସହ ପ୍ରବେଶ । ପାର୍ବତୀଙ୍କୁ ଖାସ୍ କାମରାରେ ଛଡ ଦେଇ ନନ୍ଦୀର ବହର୍ଗମନ ଓ ପାର୍ବତୀଙ୍କ ସହ କରମର୍ଦ୍ଦନ ଅଭପ୍ରାୟରେ ମହାଦେବଙ୍କର ହସ୍ତ ପ୍ରସାରଣ ।]

ପାର୍ବତୀ—[କିଞ୍ଚିତ୍ କଡ଼ ସ୍ୱରରେ ଦଣ୍ଡାୟମାନ]—ଏଣିକି ପୂଜାକୁ ମତେ ପଠାଇବାର ଅବଶ୍ୟକ ନାହିଁ । ତୁମର ସଂସାର ତୁମେ ଜାଣ ।

ମୁଁ ଏଥରକ ଯାହା ଅନୁଭବ କରଛୁ, ତହିଁରେ ପ୍ରତ୍ୟକ୍ଷ କରନ୍ତୁ ଯେ ଏ ସଂସାର ସବୁ ପଛକେ, ମୁଁ ଏବେ ଅଧମାନ ସହ ପାରବ ନାହିଁ ! ବଛୁ ଦନ ଗଲାରୁ ମୋର ଦେବତ୍ୱ ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ । ସଂସାରର ଅନୁଭବ ମନେ ପଡଲେ କ୍ରୋଧରେ ମୁଁ ଅସ୍ଥିର ହେଉଅଛୁ ।

ମହାଦେବ—ଯାହା ତ ହେଲାଣି ହେଲାଣି । ଅସ [ମହାଦେବ ଆପଣା Waist coat [ ଫତେଇ ] ପକେଟରୁ ଯେପରି Essence [ସୁଗନ୍ଧ] ଦଅ ରୁମାଲ ବାହାର କର ପାର୍ବତୀଙ୍କ ଅଶ୍ରୁ ପୋଛୁବା] ଏବେ ଅବସ୍ଥା ହେଲା କପର ? ମୁଁ ସେଥିପାଇଁ କଦାପି ଦଂଶୋଉଅଛୁ ବୋଲ ନାହିଁ । ତୁମେ କନ୍ତୁ ସବୁବେଳେ ତାଙ୍କ ପକ୍ଷ ଧରୁ ଓକାଲତି କରୁଥାଅ । ତାଙ୍କୁ ସମୂଳେ ନାଶ କରବାକୁ ମୁଁ ଉଦ୍ୟତ । ଏଥିପାଇଁ ଭଗବାନ୍ ଓ ବ୍ରହ୍ମାଙ୍କର ମୋ ସଙ୍ଗେ ବବାଦ । ଭଗବାନଙ୍କର ଗୋଟାଏ casting vote [ ଓଥିକା ଭୋଟ ] ଥିବାରୁ ସେ କାହାକୁ ମାନ ନାହାନ୍ତି । ଅଜି ଦେବାଙ୍କର ଅବସ୍ଥା ଦେଖି ମନ ଯାହା ହେଉଅଛୁ, ତାହା ମୁଁ ଜାଣେ । ଏଥର election [ନର୍ବାଚନ] ବେଳକୁ ଭଗବାନଙ୍କୁ ନ ଛଡଲେ ଅଉ ଉପାୟ ନାହିଁ । ଉଡ଼ାଗାଡ ୪ ଖଣ୍ଡ, କେମକେଲ୍ ଧ୍ୱଂଶକ କଳ ହେଲେ କାମ ଫତେ । [ପାର୍ବତୀଙ୍କୁ ସମ୍ବୋଧନ କଶ କୋଡ଼କୁ ଅନୟନ ଓ ସସ୍ନେହ ଆଲଙ୍ଗନ ] ଅହା ପ୍ରିୟେ ! ଦେହ ପୀଡତ ହେଲା କପର ? ଅଠ ଦନ ମୋ ପାଖରୁ ଗଲ, ଏହା ମଧ୍ୟରେ ଏତେ ପରବର୍ତ୍ତନ ! ସେଥିପାଇଁ ତୁମ୍ଭକୁ ଏକାକୀ କେଉଁଆଡ଼େ ଛାଡ ଦେବାକୁ ମୋ ମନ ଢ଼େ ନାହିଁ । ଅହା ! ଏ ସୁକୁମାର ଦେହ କେବେ ଦୁଃଖ ପାଇଲା ।

[ Foot-note—ପାଠକମହୋଦୟ ! ଦେଖିଲେ ତ ! waist coat ( ଫତେଇ ), essence ( ସୁଗନ୍ଧ ଅର୍କ ), casting vote ( ଅଧିକା ଭୋଟ୍ ), ଓକାଲତି ସବୁ ଦେବତାଙ୍କଠାରେ ଚଳଲାଣି । ଆଧୁନକ ସଭ୍ୟତା କାହାକୁ ସ୍ପର୍ଶ ନ କର ନାହିଁ । ଭୋଳାନାଥ ପୁରୁଣା conservative ( ରକ୍ଷଣଶୀଳ ), ତାଙ୍କର ତ ଏ ପରବର୍ତ୍ତନ ! ଅନ୍ୟାନ୍ୟଙ୍କ କଥା କଣ ?

ପାର୍ବତୀ—ବଳକୁ ବଳ ତାମସିକ ଭକ୍ତିର ମାତ୍ରା ବଢ଼ୁଛି । ମୋର ପକ୍ଷ, କେଉଁରେ ତୁମଙ୍କୁ କେଉଁ ଠିଆ କରନ୍ତି ଛନ୍ତି କହିବ ? ମୋ ପକ୍ଷରେ ତୁମର ପୂଜା ହେଲେ ମୋର ବିଶେଷ କଷ୍ଟ ଅପର ନାହିଁ । କିନ୍ତୁ 'ସ୍ୱଧାରିଣୀ'ଙ୍କର ମଧ୍ୟ ପୂଜା ! ପୂଜା ବା କାହିଁ ? କେବଳ ପ୍ରସଙ୍ଗ ! ଏ ସବୁ କେଉଁ ଶାସ୍ତ୍ରରେ ଅଛି, ମୁଁ ବୁଝି ପାରୁ ନାହିଁ । ମନେ 'ମା' 'ମା' ବୋଲି ସମ୍ବୋଧନ ନ କଲେ ଦଣ୍ଡେ ପାଣି ପିଇବେ ନାହିଁ । ମୋର ସ୍ୱାହା ଦେଇ କେତେ କାଉଁସ ଅଭିନୟ ନ ହେଲା ! ଏହୁଁ ତହୁଁ ବାଦ୍ୟ ଓ ତାମସିକ ଭକ୍ତି ଆସି ହସାଉଛି ଧୋତି ଗଳଣି । ପ୍ରଭୋ ! ଶୀଘ୍ର ଉପାୟ କର, ନଚେତ୍ ଯାହା ନାହିଁ । ମୋ ପ୍ରତି 'କାହାର ଭକ୍ତି ନ ଥାଉ ପଛକେ, କାରୁକାର୍ଯ୍ୟ ଦେଖି ଲୋକେ ପସନ୍ଦ କଲେ ହେଲା !! ଛି ଛି ! ଠିକ୍ ଏ ବିବେକଶକ୍ତି ତୁମେ ସେମାନଙ୍କୁ ଦେଇ ନାହିଁ ? ନଈକୂଳକୁ ନେଇ ବିଧବାଙ୍କଠାରୁ ଅଳଙ୍କାର କାଢ଼ି ନିଆ ଏବ ମୋଠାରୁ ଲୁଗାପଟା ଅଳଙ୍କାରପତ୍ର ଛଡ଼େଇ ନେଇ ମୂର୍ତ୍ତି ମଜେଇ ପାଣିରେ ମାଡ଼ି ଦେଲେ, ହାତ ଗୋଡ଼ ଛିଣ୍ଡି ଯାଉଛି । ଗୋଡ଼ର ବଳାପଣ୍ଡଟା ଦଉଡ଼ରେ କ୍ଷୁଣ୍ଣ ହେଉ ନାହିଁ । ( କ୍ରନ୍ଦନ )

[Foot-note ଅଳଙ୍କାର ଓ ବସ୍ତ୍ର କଥା କହୁଁ କହୁଁ ଦେବୀ ଭେ ଭେ ରଡ଼ ପକାଇଲେ । ପଣ୍ଡିତ ମହାଶୟ କହନ୍ତି, 'ସସର୍ଗଜା ଦୋଷ-ଗୁଣା ଭବନ୍ତି ।' ଦେବୀ ମର୍ତ୍ତ୍ୟରୁ ଆସି ଲୋଭ ଶିଖିଲେ । Cowper କହିଅଛନ୍ତି 'No cat is averse to fish.' ଆମ ସାଧମାଠପେ କହନ୍ତି 'ସ୍ୱର୍ଗକୁ ଗଲେ ବି ଢ଼ିଙ୍କି ଧାନ କୁଟା ଛାଡ଼ିବ ?' ଦେବୀ ହେଲେ କଣ ହେବ ? ଯେତେ ହେଲେ ତ ମାଇପି ଜାତି !]

ମହାଦେବ—( କୋପକଷାୟିତ ନୟନରେ ) ଅଚ୍ଛା ! ହାମ୍ ଠିକ୍ କର୍ ଦେଙ୍ଗେ । ଓଃ ! ରାହିକା ଧାତୁ ଭିଜିଛୁ ! [Foot-note—'ଯଥା ଦେବେ ତଥା ଦେବେ,' ଯେପରି ଆମ୍ଭମାନେ ରାଗି ଗଲେ ବେଳେ ବେଳେ ହିନ୍ଦୁସ୍ଥାନୀ ପଦେ ଅଧେ ମୁହଁରୁ ବାହାର ଯାଏ, ମହାଦେବ.

ସେହିପରି ଏ ବ' ପର୍ଦ୍ଦ କଥା ହୃଦୀରେ ରହି ଯାଇଥିଲେ । ପାଠକେ ! ଗୋଟାଏ ଖୁବ୍ ଭଲ simile (ଉପମା) ମନେ ପଡ଼ିଗଲା । ମହାଦେବଙ୍କ ବୋଧବସ୍ଥାରିତ ହିନ୍ଦୁ ତାହା ସଙ୍ଗରେ ତୁଳନୀୟ ? ଟିକିଏ ଭାବନ୍ତୁ । ଖିଡ଼ରେ ଥରେ ଷ୍ଟେସନରୁ ରେଳ ଗାଡ଼ି ଛାଡ଼ି ଦେଲା ବେଳେ ଟିକିଏ ରେଳ ଗାଡ଼ି ପଛ ଅଡ଼କୁ ଚାହିଁଲେ ଦଠାହ ମୋ ଉପମାଟାକୁ ଗିରଫ କରି ନେବେ । ରେଲ ଗାଡ଼ିର ଶେଷ ଗାଡ଼ି ( ଯେଉଁଥିରେ guard ( ଗାର୍ଡ ) ଥାନ୍ତି ) ସେ ଗାଡ଼ିର ମସ୍ତକର ମଧ୍ୟ ଭାଗରେ ଗୋଟିଏ ଲେଳ ଅନ୍ଧୁଅ ଓ ଦୁଇ ପାର୍ଶ୍ୱରେ ଯୋଡ଼ାଏ ନାଲି ଆଲୁଅ । ମହାଦେବଙ୍କ ମୁହଁଟି ସେହିପରି ହିରଣ୍ମୟନ୍ତୁ ଦେଖା ଦଶୁଥାଏ ।) ଅଛା, ପ୍ରିୟେ ! ତାପରେ ତୁମେ ଅହିଲ କପରି ? ବାଟରେ ତ କୌଣସି ଅସୁବିଧା ହେଇ ନାହିଁ ?

ପାର୍ବତୀ—ସେ ସରମ କଥା କଣ କହିବି ? ବାଟରେ ଅମ୍ଭ ଅମ୍ଭ ମୋର ବାଉଳ ରୂପ ଦେଖି ପଡ଼ଗଦାଳା ମତେ ବାଘୁଣୀ ବୋଲି ନେଇ ପାଗଳାଖାନା ( Lunatic assylum )ରେ ପୂରେଇଥିଲେ । ବଡ଼ ସାହେବ ଅସି ଉଦାରଣ କରି ମତେ ସାର୍ଟିଫିକେଟ ( certificate) ଖଣ୍ଡେ ଦେଲାରୁ ମତେ ପାଗଳାଖାନାବାଲା ଖଣ୍ଡେ ଥାନଫଡ଼ା ଲୁଗା ଓ ଦେଢ଼ ଅଣା ପଇସା ଦେଇ ବିଦାୟ କରି ଦେଲେ । ତୁମେ ଥାଉଁ ଥାଉଁ ମୁଁ ଥାନଫଡ଼ା ଲୁଗା ପିନ୍ଧୁଛି କିମିତି ? ପଛକୁ କଣ କହିବି, ପିନ୍ଧି କରି ଅଇଲି । ରେଳ ଷ୍ଟେସନ [ station ] ରେ ପହଞ୍ଚିଲି । ଗଳା ଦରକ, ତା ଉପରେ ଅଜୀର୍ଣ୍ଣ ଝାଡ଼ା [ diarrhœa ]; ଡାକ୍ତର ମାଲୀକାରେ ମୁଁ ଅଟକ ରହିଲି । ଅସି ଡାକ୍ତରଖାନା [ Hospital ] ରେ ପଡ଼ିଲି । ପଛକୁ ଡାକ୍ତରଙ୍କ ପାରେ ଅମୃତାଂଶ ଦେଇ ଦେବାରୁ ଡାକ୍ତର ବାବୁ ବରଷ୍ଟ ପରିଶ୍ରମ କଲେ । [ ମହାଦେବ ପାର୍ବତୀଙ୍କଠାରୁ ସେ ଡାକ୍ତରଙ୍କ ନାମ ଧାମ ଓ ଠିକଣା ଅପଣା memorandum [ସ୍ମୃତି ଚି ବହି ] ରେ copying pencil [ କାଳିଗଣ ପେନ୍ସିଲ୍ ] ରେ ଟିପି

କେଲେ ।) କେବେ tincture କେବେ mixture କେବେ powder କେବେ liniment ଦେଖାଯାଉ ବନ୍ଦ ଗଲା । ଜ୍ୱର ୧୦୬°୮° ହୋଇ ଯାଉଥିଲା । collapse [ସନ୍ନିପାତ] ମଧ୍ୟ ହୋଇଥିଲା । ସ୍ତିର ହେଲା sagoo ଅଣ୍ଡ milk [ସାଗୁଦାନା ଓ ଦୁଗ୍ଧ] ଖାଉଛୁ । ଟିକେ ଉଠି ବସି ପାରନ୍ତି । ଡାକ୍ତର ବାବୁ ଦୟା କରି discharge [ ଖଲାସ ] କରି ଦେଲେ ଏବଂ ନିଜେ ଷ୍ଟେସନକୁ ଆସି ଟିକଟ୍ କିଣି ଦେଇ ଗାଡ଼ିରେ ବସାଇ ଦେଇ ଗଲେ । Hospital [ ଡାକ୍ତରଖାନା ] ରୁ ନିଜକୁ telegram [ ତାରଖବର ] କରିଥିଲି । ଘରରେ ରହି ମୁଁ ପୂର୍ଣ୍ଣ ସଂସାରୀ ହୋଇ ଗଲି ।

ମହାଦେବ — ଅଚ୍ଛା, ଟ୍ରିପ୍ଲେ ! ଅପୃ ଧର, ମୁଁ ସମସ୍ତଙ୍କୁ ଉଚିତ ଶିକ୍ଷା ଦେଉଛି । ଡାକ୍ତର ବାବୁଙ୍କୁ ଅମର ବର ଓ ଅଚଳାଚଳ ସମ୍ପତ୍ତି, ଧନ, ଜନ, ଗୋପ, ଲକ୍ଷ୍ମୀ, ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ, ଧାନ୍ୟ, ଯଶ, ସବୁ ଦିଅ ଦିବ । ( ସ୍ୱଗତଃ — ଡାକ୍ତର ବାବୁ ନ ଥିଲେ ମତେ ବୁଢ଼ାଦିନେ 'ନୂଲେର ଲଲ୍' ବ୍ୟବହାର କରିବାକୁ ହୋଇ ଥାନ୍ତା । ଏ ବୁଢ଼ା ବୟସରେ କେତେ କନ୍ୟା ଦେବାକୁ ମଙ୍ଗନ୍ତେ ନାହିଁ । ଯେବେ ଅବା କେହି ମଙ୍ଗନ୍ତେ, ତେବେ ଦୋଯାଇ ବର ଚୋଲି ବନ୍ଧକ ଦାମ ହାନ୍ତେ । ମୁଁ ଟଙ୍କା ପାନ୍ତୁ ନାହିଁ ?)

[Foot-note—ଦେବତା ମାନଙ୍କରେ ମଧ୍ୟ ଦେଖିଲେ କି ! ଦୋ-ଯାଇ ( ମୃତଦାର ) ବରଙ୍କୁ ବେଶି ଜରିମନା ଦେବାକୁ ପଡ଼େ ! ]

ଅଚ୍ଛା ! ପଇଁତ୍ରିଶ ମିନିଟରେ ସବୁ ଭସ୍ମ କରି ଦେବ । ଚପ୍‌ରାସୀ ! [ ଏହା କହି ଖଣ୍ଡେ କାଗଜରେ ଖଣ୍ଡିଏ ଚିଠି ଡ୍ରାଫ୍ଟ୍ ( draft ) କଲେ । ] ( ବାହାରୁ 'ହଜୁର' ବୋଲି ଉତ୍ତର ଦେଇ ଏକ ସଲାମ୍ କରି ନନ୍ଦୀର ପ୍ରବେଶ) କେରାନୀ ବାବୁଙ୍କୁ ସଲାମ୍ ବୋଲେ । (ନନ୍ଦୀର ପ୍ରସ୍ଥାନ, ଓ ଦେଢ଼ ମିନିଟରେ କେରାନୀ ବାବୁଙ୍କ ସହ ପୁନଃ ପ୍ରବେଶ ) Well ! Bayboo ! ଦେଖୋ, ଏ ଚିଠିକା ଏକ fair copy (ସାଫ

ନକଲ ) କର୍‌କେ ଯମ୍ ଦେବତା ପାଶ୍ ଅଜ୍ ଡାକ୍‌ମେ ଭେଜୋ । ନେହିଁ ଇ ମୁଲ୍‌କକା କର୍‌କେ ହାମ୍‌ରା ସଲାମ୍ ବୋଲେ । ( ଢେଙ୍କଣୀ ବାବୁ ପତ୍ର ଖଣ୍ଡକ ହାତରେ ଧର ସଲାମ୍ କର ପ୍ରସ୍ଥାନ )

[Foot-note ଢେଙ୍କଣୀ ବାବୁ ଅମ ଦେଶୀ ଢେଙ୍କଣୀ ବାବୁଙ୍କ ଭଳି । ପାଦରେ ଅବଶ୍ୟ ଯୋତା ନାହିଁ । ]

ପତ୍ର ଖଣ୍ଡିକ ଇଂରେଜୀରେ ଲେଖା, ଏହି:—

Urgent (Demi official)

---

My dear Jam, My Lady has been brutally assaulted by the unfeeling mob below. They must be dealt with under Council's Code no. 45 Dt. 1-1-00. Depute Plague, Small pox, Cholera and Malaria with armed force to disperse the mob. Herein fail not.

Sd. B. M.

P. S. I have sent an order to H. H. Indro to send his thunderbolt. Please return the accompanying warrant to this court with an endorsement certifying that the order has been executed.

Sd, B.

ଅନୁବାଦ—ପ୍ରିୟ ଯମ ଦେବ; ମେମ୍ ସାହେବ ପୃଥିବୀର ତଳର ଲୋକଙ୍କଠାରୁ ପାଶବ ଅତ୍ୟାଚାର ଭୋଗ କରିଅଛନ୍ତି--ସଭାର ସ୍ଥାୟୀ ପ୍ରାରମ୍ଭର ୪୫ଶ ବ୍ୟବସ୍ଥା ଅନୁସାରେ ସେମାନେ ଦଣ୍ଡ୍ୟ । ଅତଏବ ସେମାନଙ୍କୁ ଦଣ୍ଡ ଦେବା ନିମନ୍ତେ ମହାମାରୀ, ବସନ୍ତ, ବସୂଚିକାଙ୍କୁ ପଠାଅ । ସେମାନେ ସସୈନ୍ୟରେ ତଳର ଲୋକଙ୍କ ମେଳ ଭାଙ୍ଗି ଦିଅନ୍ତୁ ।

[ସ୍ୱାକ୍ଷର—ମହାଦେବ]

ପୁନଶ୍ଚ—ଇନ୍ଦ୍ରରାଜଙ୍କ ନିକଟକୁ ହୁକୁମନାମା ଯାଇଅଛି ଯେ ସେ

ଚନ୍ଦ୍ରଙ୍କୁ ପଠାଇ ଦେବେ । ଏଥି ସଙ୍ଗେ ଥିବା ଉଅର୍‌ସରେ ହୁକୁମ ଜାରିଲ କରିଥିବା ନିଦର୍ଶନ ଲିପି ସ୍ୱାକ୍ଷର ସହ ଅମୃତ ଚଲାନସବୁ ଫେରାଇ ଦେବ ।

[Foot-note—ଦଣ୍ଡବିଧି ବ୍ୟବସ୍ଥା ମଧ୍ୟ ସ୍ୱର୍ଗରେ ଚଳିଲା । ଦେବତା-ମାନେ ଏତିକି ଖୁବ୍ liberal 'ପରିବର୍ତ୍ତନଶୀଳ' ହେଲେଣି ।]

ଭୃଙ୍ଗୀର ପ୍ରବେଶ ଓ ମହାଦେବଙ୍କ ହସ୍ତରେ ଖଣ୍ଡେ visiting card (ଦର୍ଶନକାର୍ଡ଼) ପ୍ରଦାନ ! ]

ଭୃଙ୍ଗୀ—ବଡ଼ା ସାହେବ ସଲାମ୍ ଦେତେ ହେଁ ।

ମହାଦେବ—କାଲ୍ ଫଜର ଆନେକୁ ବୋଲୋ । ହାମ୍‌ରା ମେଜାଜ୍ ଦୁରସ୍ତ ନେହିଁ । ମେମ୍ ସାହେବକା ତବିୟତ୍ ବି ଥିକା ନେହିଁ । ବଡ଼ା ସାହେବକୁ ଏ ଖବରକାଗଜ ଦୋ, ହାମ୍‌ରା ବହୁତ ବହୁତ ସଲାମ୍ ବୋଲୋ । [ ଏହା କହି ଭୃଙ୍ଗୀ ହସ୍ତରେ 'ସୁଧାଚନ୍ଦ୍ରିକା', ଖବର-କାଗଜ ପ୍ରଦାନ ]

(Foot-note—ସ୍ୱର୍ଗରେ 'ସୁଧାଚନ୍ଦ୍ରିକା' ନାମକ ସମ୍ବାଦପତ୍ର ଚଳେ । ସ୍ୱର୍ଗରେ ଗୋଟିଏ ଛାପାଖାନା ନାହିଁ, ଶୀଘ୍ର ଫିଟିବା ସମ୍ଭବ । କିନ୍ତୁ Type-writer ନାମକ ଯନ୍ତ୍ରରେ ବର୍ତ୍ତମାନ 'ସୁଧାଚନ୍ଦ୍ରିକା' ନାମକ ଖବରକାଗଜ ଲେଖା ହୋଇ ବାହାରେ । ସେ ସମ୍ବାଦପତ୍ର କଥା ଦ୍ୱିତୀୟ ଅଙ୍କରେ ଶୁଣିବେ ।)

ଭୃଙ୍ଗୀର ଓ ନନ୍ଦୀର ପ୍ରସ୍ଥାନ ।

ପଟକ୍ଷେପଣ ।

[ ଭିତରୁ concert (ବାଦ୍ୟ) ଓ ସଙ୍ଗୀତ ଅବ୍ୟକ୍ତ ମଧୁର ନିକ୍ୱଣ ।

—○—

ମାଷ୍ଟର ମହାଶୟ Novodrama ଠିକ ପ୍ରଥମ ଦୃଶ୍ୟ ଶେଷ କଲେ । ସେ କହିଲେ ଯେ ଏଥିରେ ପଣ୍ଡିତ ମହାଶୟ ଓ ରାମହରି ମିଶ୍ର ବି. ଏ. ଙ୍କୁ ବିଶେଷ ସାହାଯ୍ୟ କରିଛନ୍ତି ।

ମୁଁ କହିଲି—ମାଷ୍ଟର ମହାଶୟ, ବେଶ୍ ! ଇଂରେଜୀ poem (ପଦ୍ୟ ) ଆପଣ ରଚନା କରି ସମୟ ନଷ୍ଟ କରୁଥିଲେ । ଆପଣ ଉ ଆଜ ମନ କରି ନାହାନ୍ତି ।

ମାଷ୍ଟର—ଗମହର ମିଶଙ୍କ 'ଅପ୍ରିୟ ସତ୍ୟ' ଉପଦେଶ ଓ ସଂଶୋଧନ ନ ପାଇଥିଲେ ମୋର poem (ପଦ୍ୟ) compoje (ରଚନା) ଅଭ୍ୟାସଟି leave (ତ୍ୟାଗ) କରି ନ ଥାନ୍ତି ।

ମର୍ଦ୍ଦରାଜ—ମାଷ୍ଟର ମହାଶୟ ! 'ଦେବଗଣେର ମର୍ତ୍ତ୍ୟେ ଆଗମନ' ଶୀର୍ଷକ ଖଣ୍ଡିଏ ବଙ୍ଗ ଭାଷାର ଉତ୍କୃଷ୍ଟ ପୁସ୍ତକର ଛଟା ସଙ୍ଗେ ଆପଣଙ୍କ ଲେଖା କେତେକ ଅଂଶରେ ଭୁଲନୀୟ । ଆପଣ ଏହାକୁ ନାଟକୋ-ପନ୍ୟାସ ଭାବରେ ନ ଲେଖି ଉପନ୍ୟାସ ଆକାରରେ ଲେଖିଥିଲେ ବେଶ୍ ହୋଇଥାନ୍ତା । କିନ୍ତୁ ଯାହା ହେଉ, ଆପଣ ବେଶ୍ କରିଅଛନ୍ତି । ସ୍ଥାନେ ସ୍ଥାନେ ବ୍ୟଙ୍ଗବିଦ୍ରୂପର ମାତ୍ରା ଟିକିଏ ଅଳ୍ପ ହୋଇଥିଲେ ଅଧିକ ମଧୁର ହୋଇଥାନ୍ତା । ଯାହାହେଉ, ଏ ଖଣ୍ଡିକ ଶେଷ କରି ଅମ୍ଭମାନଙ୍କୁ ଦେଖାଇବେ । ଅବଶ୍ୟ ଜଣଙ୍କୁ ଛଅ ଜଣ ଦେଖିଲେ ଅନେକ ଭ୍ରମ ପ୍ରମାଦ ଦୂର ହୋଇ ପାରେ । ଆପଣାର ତ୍ରୁଟି ଅନ୍ୟ ଲୋକ ଚକ୍ଷୁରେ ପଡ଼ିଲେ ଶୋଧିତ ହେବାର ସୁବିଧା ଢେର ମିଳେ; ସେଥିରେ ଲଜ୍ଜିତ ହେବାର କଥା କଛୁ ନାହିଁ ।

ମସ୍ତରାମ—ସ୍ୱର୍ଗରେ ପୂଜା କାଡ଼ା ଲାଗିଲେଣି ? ଦୁର୍ଗାପୂଜାଟି ବନ୍ଦ ହେଲେ ଅମ ଭୋଜନରେ ଧୂଳ ପଡ଼ିବ । ପୂଜାଟି ବନ୍ଦ ହେଲେ ଉପ୍ଚୁଲ କଟେଇ ତ ଆଉ ବନ୍ଦ ହବ ନାହିଁ । ମୋର ସିନା ଭୋଜନ ବନ୍ଦ ହବ, ଗହବ ଦୁଃଖିନ କଷ୍ଟ ମେଣ୍ଟିବ । କଟପ ବନ୍ଦ ହେଲେ, ଦୁଃଖୀ ଭିକାରିଙ୍କୁ ଦଶା ପଡ଼େ । ବାବୁମାନେ ସେହ୍ଲୀଖଣ୍ଡରେ ଯେ ସଂରକୁ ମଫସଲକୁ ଯାନ୍ତି । ଭକ୍ତମାନଙ୍କ ଭିଡ ବନ୍ଦ ହୁଏ । ବାଣ ମଜଲିସରେ ଟଙ୍କା ଉଡ଼ୁଥାଇ, ଦୁଃଖୀ ଭିକାରିମାନ୍ନ ! ତାହାର ଉପବାସ, ତାହାର ଉପବାସ । ଆଉ ଗୋଟିଏ କଥା । ଦଶହରାରେ

ଦେବାଙ୍କ ଅଗରେ ବାଈନାଚ ହେବ । ମତେ ଭାରି ଖୁସି ଲାଗେ । ଅଚ୍ଛା, ଦେବାଙ୍କି ବାଈନାଚ । କମିତ ଲାଗେ, ସେ କଥା ତ ମାଷ୍ଟରେ ବହି-ଲେଖିଲେ ନାହିଁ । ଆମ ବାବୁ ଏ ବରଷ ଯୋଉଁ ବାଈ ପଞ୍ଝାକୁ ଅଣିଥିଲେ, ସେ ବାଈ ଭାରି ସରସ । ଗମ ବାବୁ ସେ ବାଈଙ୍କ ଅଡ଼କୁ ନ ଚାହିଁଲେ ବୋଲି ସେ ବାଈଙ୍କ ଭିତରୁ ଜଣେ କହିଲା, 'ଶିଳ ଶିଳ୍ପପତା ଗଗନେ ଉଡ଼ୁଛି, ପିମିକ ଭୁଲା କହୁଛି, ମତେ ରଖ ! ଗଣ୍ଡା ଗଣ୍ଡା ବଢ଼ିଆ ବାବୁ ଆମ ଗୋଡ଼ତଳେ ବନ୍ଧା । ସମ ବାବୁ ଗୋଟାଏ ବାବୁରେ ସୁମାର ?' ବାଈ ଏଠେଇଁ ଚାରି ଦିନ ରହିଲେ ଯେ ଏ ଗାଁରେ ବାବୁଙ୍କ ଘରେଁ ଦିନ ଘଡ଼ି ଦେଖଣାହାରି । ବାଈଙ୍କ ଅଲଙ୍କାର ପତ୍ର, ବନାରସୀ ଶାଢ଼ୀ ଦେଖି ମୁଁ ବୁଝିଲିଁ ଯେ ଅମ ମାଇପଙ୍କ କପାଳରେ ଏ ସୁଖଭୋଗ ନାହିଁ । ମଣିଷଙ୍କ ତପସ୍ୟା ରଜା ଜନ୍ମରେ ଶେଷ; ମାଇପଙ୍କ ତପସ୍ୟା 'ବାଈ' ଜନ୍ମରେ ଶେଷ । ( ପାଠକ, ମନେ କରିବେ ନାହିଁ ଯେ ମାଇପଙ୍କ ତପସ୍ୟା ବାଈ ଜନ୍ମରେ ଶେଷ, ଏହା ମନ୍ତ୍ରରାମର ଗୋଟିଏ ଖାମ ଖେୟାଲ । ଆପଣ ଥରେ ଜ୍ୟୋତିଷ ଶାସ୍ତ୍ରରୁ ଜାତକରେ ଏକା ଘରେ ଚାରିଗ୍ରହ ଥିବା ଫଳଟା କଣ ପାଠ ତାଙ୍କୁ ମିଳାଇ ଦେଲେ ବୁଝିବେ)—ଯେତେ ଗୋଟାଏ କାରଖାନା ହେଲେ କଅଣ ହବ, ବାଈନାଚ ନ ହେଲେ ସବୁ ଅକାରଣ ! ହେଲେ କଣ ହବ, ମୁଁ ଭୋଜନର ମାଲିକ । ପେଟପଟ୍ଟା ଭୋଜନ ମିଳୁଥିଲେ ବାବୁମାନଙ୍କ ଭଳି ମତେ ନାଟ ଫାଟ ଭଲ ଲାଗେ ନାହିଁ ।

ମନ୍ତ୍ରରାମ ଅଜ ଟୁଙ୍ଗୀରେ ନୀରବ ହୋଇ ବସିଥିଲା । ଶେଫକୁ ତା ପାଟି ପିଟିଲା । ଅଉ ସମ୍ଭାଳେ କିଏ ?

ପେଚ୍ଛ କହିଲା, 'ସ୍ୱର୍ଗରେ ଅପସରା ନାଚନ୍ତି । ତାଙ୍କୁ ତ ଆମ ବାଈଙ୍କ ଭଳି ଶ୍ୟାମଟା କାଢ଼ି ଅସୁ ନ ଥିବ । ମତେ ଜଣାଯାଏ ନୂଆ ନାଟ ଦେଖି ଦେବା ଭାରି ଖୁସି ହଉଥିବେ ପରା । ସେ ପିନା ମହାଦେବଙ୍କ

ଅଭିସନ୍ଧି ଦେଖିଛନ୍ତି, ବାଈନାଚ କାହିଁ ଦେଖିବେ ? ଏ ବାଈନାଚ ଲୋଭ ଥିଲେ ଦେଖ ସେତେବେ ଦତ୍ତଗଞ୍ଜ ଗଲେ ପୂଜା ଦଶହରା ବେଳେ ଦଶହରା ଘର ବନ ସ୍ୱର୍ଗରେ ରହି ପାରିବେ, ମନେ ତ ଯୁଦ୍ଧ ପସନ୍ଦ ଲାଗୁ ନାହିଁ । ଆଉ ପାଠରେ ସବୁ ଅଛି;-ଉପରେ ବାଘ, ତଳେ ବାଘ, ଭିତରେ ବାଘ ।

ଶେଷ କଥା ଆମ୍ଭେମାନେ ବୁଝି ପାରିଲୁ ନାହିଁ ଓ ମସ୍ତରାମ୍ ପ୍ରେମରେ ଟୁଙ୍ଗୀରୁ ଉଠିଗଲା । ଏବେ ଭ ମସ୍ତରାମ୍ ପାଗଳ । ତା ଉପରେ କାହିଁ କାହିଁ କଥାମାନ ଆଣେ । ଅଜ ଯାହା କହିଗଲା, ତହିଁରେ ଆମ୍ଭେ-ମାନେ ବାଧା ଦେଲୁ ନାହିଁ । ବାଧା ଦେବାର ବିଶେଷ ଅବଶ୍ୟକ ବୋଲି ମନେ କଲୁ ନାହିଁ । ପାଠକ ମନେ କରନ୍ତି କି ?



## ଦଶମ ସନ୍ଧ୍ୟା ।

---

ମଧୁରାମ୍ ଆଜ ସମସ୍ତଙ୍କ ଆସିବାପୂର୍ବରୁ ଟୁଙ୍ଗୀରେ ଉପସ୍ଥିତ । କେତେ-କ୍ଷଣ ପରେ ମୁଁ, ମାର୍କଣ୍ଡେ, ଶ୍ୟାମସୁନ୍ଦର ବାବୁ, ପଣ୍ଡିତ ମହାଶୟ ଆସି ପହଞ୍ଚିଲୁଁ, ସମସ୍ତେ ବସିଲୁଁ । ଆଜ ଦେଖିଲୁଁ ଯେ ମଧୁରାମ୍ ଅପେକ୍ଷାକୃତ ପ୍ରକୃତସ୍ଥ ଓ ଦୁଃଖଭାରାକ୍ରାନ୍ତ । ମଧୁରାମଙ୍କୁ ଆମ୍ଭେମାନେ ଜାଣୁଁ ପ୍ରେମର ଅବତାର—ଆତ୍ମାରାମ୍, ସବୁବେଳେ ଆନନ୍ଦମୟ; ସେ ଆଜ ବିମର୍ଷ, ଏ ବଡ଼ ଆଶ୍ଚର୍ଯ୍ୟ ! ଆମ୍ଭେମାନେ ସମସ୍ତେ ମଧୁରାମଙ୍କୁ କାରଣ ପଚାରିଲୁଁ । ମଧୁରାମଆଖିରୁ ଦୋପାଏ ଲୁହ ଗଡ଼ି ପଡ଼ିଲା ଓ ମଧୁରାମ୍ କହିଲେ 'ମୁଁ ଭାବୁଥିଲି, ଏ ସଂସାର କେଡ଼େ ନମକ୍‌ହରାମ୍ । ଏହି କଥା ଭାବୁଁ ଭାବୁଁ ପନ୍ଦର ବର୍ଷ ତଳର କଥା ମନେ ପଡ଼ିଗଲା ।' ଏତକ କହି ପୁନର୍ବାର ନୀରବ ଯାଗ ! ଆମ୍ଭେମାନେ କିଛି ବୁଝି ପାରିଲୁଁ ନାହିଁ । ତାଙ୍କୁ ମନା କଲେ ସେ କ'ଣ ମାନିବା ଲୋକ ? ଅବଶେଷ କହିଲେ:—

"ମୋର ଆଜ ୫୮ ବର୍ଷ ପୂରିଲା; ଆଉ ବେଶି ଦିନ ରହିବାର ଇଚ୍ଛା ନାହିଁ । ମୋର ପାଗଳ ହେବାର କାହାଣୀ ଶୁଣିଥାଅ । ପୂର୍ବେ ମଠରେ କେତେ ଲୋକ ପଚାରିଥିଲେ, ମୁଁ କିଛି କହି ନାହିଁ । ଏ ଘଟଣା ଅନେକ ଦିନ ତଳର । ମୋର ସେତେବେଳେ ବୟସ ୨୬ ବର୍ଷ; ଆଗରୁ ୭ ବର୍ଷ ତଳେ ମୁଁ ବିଭା ହୋଇଥିଲି । ମୁଁ ଯେଉଁ ବେଳର କଥା କହୁଛି, ସେ ସମୟକୁ ମୁଁ ମୋ ସ୍ତ୍ରୀ ସଙ୍ଗରେ ଭାରି ସୁଖରେ—ଅତି ଆନନ୍ଦରେ ୬ ବର୍ଷ କଟାଇଥିଲି । ଆମ୍ଭମାନଙ୍କ ମଧ୍ୟରେ ଦିନେ ହେଲେ ଖଲବଲ ଲାଗି ନ ଥିଲା । ଈଶ୍ୱର ମୋତେ ଖାଇବା ପାଇଁ ଉପାୟ ଦେଇଥିଲେ । ଆପଣା ବଳବାହୁ ଯାହା ବୁଝି ମୋ ଦୁଃଖରେ ମୁଁ ଥାଏଁ । ମୋ ସ୍ତ୍ରୀ ମୋତେ ଦଣ୍ଡେ ନ ଦେଖିଲେ ପାଣି ପିଉ ନ ଥିଲା । ମୁଁ ଏଣେ ତେଣେ ବୁଲି ଘରକୁ ଆସେଁ, ଘର ମୋତେ ସ୍ୱର୍ଗପରି ଲାଗୁ-ଥିଲା । ମୁଁ ଜାଣୁଥିଲି ମୋ ଘର ସ୍ୱର୍ଗ, ମୋ ସ୍ତ୍ରୀର ପ୍ରାଣ ମୁଁ— ମୋ

ପ୍ରାଣ ମୋ ସ୍ତ୍ରୀ; ଜଣଙ୍କ ପ୍ରାଣରେ ଚୋଟ ଲାଗୁଥିଲେ ଅନ୍ୟ ଜଣଙ୍କୁ ବାଧୁଥିଲା—ଅଖିରୁ ଲୁହ ବୋହୁଥିଲା । ଏହିପରି ୬ ବର୍ଷ ଗଲା । ମୁଁ ପିଲାଦିନେ କିଛି ପାଠ ପଢ଼ିଥିଲି । ମୋର ଗୋଟିଏ 'ଦୋଷ ଥିଲା; ମୁଁ ବେଳେ ବେଳେ ଟିକିଏ ନିଶା ଖାଉଥିଲି । ଈଶ୍ୱରଙ୍କ କୃପାରୁ ସେ ନିଶା ମୁଁ ୩୦ ବର୍ଷ ହେଲା ଛାଡ଼ିଲିଣି । ସେ ନିଶା ଖାଇ ମୁଁ ବାଉଳା ପରି ହୋଇଯାଏଁ, କଣ କଣ ପଚାରେଁ, ବେଳେ ବେଳେ ଠିକଣା ନ ଥାଏ । ସେ ନିଶା ଯୋଗରେ ବେଳେ ବେଳେ ମୁଁ ଗୋଟିଏ ଗୋଟିଏ କାମ କରି ପକାଏଁ, ପଛେ ମୂର୍ଚ୍ଛାଭୋଗି ହୁଏଁ, ମୋର ଗୃହ ନ ଥାଏ; ପଛକୁ ଭାବି ହୁଏଁ; କଲା କାମ କି ଆଉ ଫେରି ଆସେ ? [କ୍ରମଶଃ ମଧୁଗମର ସ୍ୱର ଗମ୍ଭୀରତର ହେଲା । ଆମ୍ଭେମାନେ ସମସ୍ତେ ଏକାଗ୍ରଚିତ୍ତରେ ମଧୁଗମର ମୁହଁକୁ ଚାହିଁଥାଉଁ । ପଣ୍ଡିତ ମହାଶୟ କହିଲେ, ଅହା ! ଏବଂଭୂତ ଅନେକ ଲୋକ ପାନାସକ୍ତ ହୋଇ ସଂସାରବିରାଗୀ ହୋଇ ଯାଉଅଛନ୍ତି । ]

"ଦିନକର ଅସାବଧାନତାରେ କଣ ହେଲା, ଶୁଣ:—ମୁଁ ପରେ ଜାଣିଲି । ଦିନାକେତେ ଗଲାରୁ ମୋ ସ୍ତ୍ରୀଠାରେ ଟିକିଏ ଟିକିଏ ପରିବର୍ତ୍ତନ ଦେଖିଲି । ମୁଁ ପ୍ରଥମେ ମନେ କଲି, ମୋ ସ୍ତ୍ରୀର ଶରୀର ଅସୁସ୍ଥ ଅଛି; କିନ୍ତୁ କିଛି ଦିନ ପରେ ଦେଖିଲି ସେ ଋତୁବେଳେ ନ୍ତ୍ରୋ କଲା ପରି ବୋଧ ହେଲା । ଆଜି ଘର ସଜାଉଛି, କାଲି କେତେ ପଦାର୍ଥ ସଞ୍ଚୟ କରୁଛି, ମୋ ଆଡ଼କୁ ତାର ପୂର୍ବେ ଯେଉଁ ପରି ଦୃଷ୍ଟି ଥିଲା, ତାହା କ୍ରମେ କ୍ରମେ ବଦଳିଲା ପରି ମତେ ଜଣାଗଲା । ଏହିପରି ପ୍ରାୟ ୮।୧୦ ମାସ ଗଲା । ଏବେ ମତେ କୌଣସି ବିଷୟ ମନ ଖୋଲି କହେ ନାହିଁ । ମୁଁ ମଧ୍ୟ ତା ଯୋଗୁଁ ଚିନ୍ତିତ ହେଲି । ଦିନେ ଅତି କାତର ହୋଇ ପଚାରିଲି । ସେ କହିଲା 'ତୁମେ ଯେଉଁ ଅଭ୍ୟାଗତଙ୍କୁ ଆସିବାକୁ କହିଛ, ତାଙ୍କର ନିମିତ୍ତ ତରତ୍ ହବ, ମୁଁ ଏ ୮।୧୦ ମାସ ହେଲା ସେହି କଥା ବିଚାରୁଛି ଆଉ ତାଙ୍କ ଚର୍ଚ୍ଚା ନିମନ୍ତେ ସଜ ହଉଛି ।' କେବେ ଆସିବେ ?

ସେ ଏବେ ? ମୁଁ କ ତାହାକୁ ମୋ ଘରକୁ ଆସିବାକୁ ଅନୁମତି ଦେଇ ନାହିଁ । ଏପରି ନାନା କଥା ମୋ ମନରେ ଉଦିତ ହେଲା; କିନ୍ତୁ ସ୍ତ୍ରୀଠାରୁ କିଛି ଉତ୍ତର ପାଇଲି ନାହିଁ । ବୋଧହୁଏ ସେ ଲଜ୍ଜା କଲା । ମୁଁ ମଧ ବୁଝିଲି ଯେ ନଶାଘୋରରେ କେତେବେଳେ କଣ କହି ପକାଇଥିବି, ମୋ ସ୍ତ୍ରୀ ସେହି କଥାକୁ ସତ ମଣି ଏପରି ବ୍ୟସ୍ତ । ମତେ ଏହା ଅଦ୍ଭୁତ ବୋଧ ହେଲା । ମୁଁ ପ୍ରଥମେ ପ୍ରଥମେ ତା କଥାକୁ ଥଟ୍ଟା ବୁଝିଲି —ଏହାପରେ ଆଉ କେତେ ଦିନ ଗଲା । ଦିନେ ମୋ ସ୍ତ୍ରୀ ଅତ୍ୟନ୍ତ ପୀଡ଼ିତା ହେଲାପରି ବୋଧ ହେଲା, ଅନେକ ଲୋକ ତାକୁ ଦେଖିବାକୁ ଆସିଲେ । ପ୍ରାୟ ୯ଟାଏ ଦିନ ପର୍ଯ୍ୟନ୍ତ କିଏ କେତେବେଳେ କି ସମ୍ବାଦ ଆଣି ଦେଲେ, ତହିଁରୁ ମୁଁ କିଛି ତଥ୍ୟ ପାଇଲି ନାହିଁ । କିଏ ଆସି ଏକ୍ଷଣରେ କହିଲା, ମୋ ସ୍ତ୍ରୀର ଜୀବନର ଆଶା ନାହିଁ । ପରକ୍ଷଣରେ ଆଉ ଜଣେ ଆସି କହିଲା, ସମସ୍ତ ମଙ୍ଗଳ । ଏହିପରି ପ୍ରାୟ ୫।୬ ଘଣ୍ଟା ବିତି ଗଲା । ପରେ ଜଣେ ବୃଦ୍ଧା [ ସମ୍ପର୍କରେ ମୋର ପିତାଙ୍କର ଜ୍ୟେଷ୍ଠପିତୃବ୍ୟପତ୍ନୀ ଅଟନ୍ତି ] ଆସି କହିଲେ ଯେ ଜଣେ ଅତି ବୃଦ୍ଧ ଅତିଥି ଆସି ଅନ୍ତଃପୁରରେ ସହସା ଉପସ୍ଥିତ । ମୋ ସ୍ତ୍ରୀର ଏପରି ମୁମୂର୍ଷୁ ଅବସ୍ଥା, ତହିଁରେ ପୁଣି ବହିର୍ଦ୍ୱାରରେ ନ ରହି ହଠାତ୍ ଅନ୍ତଃପୁରରେ ଅତିଥି ଉପସ୍ଥିତ । ମତେ ଏହା ପ୍ରଥମେ ଅଦ୍ଭୁତ ବୋଧ ହେଲା । କିନ୍ତୁ କଣ କରିବି, 'ସର୍ବତ୍ରାଭ୍ୟାଗତୋଗୁରୁଃ,' ଇତ୍ୟାଦି ହୋଇ ନବାଗତ ଅତିଥିଙ୍କର ଉପଯୁକ୍ତରୂପେ ଚର୍ଚ୍ଚା କରିବାକୁ ସେ ବୃଦ୍ଧାଙ୍କୁ ଅନୁରୋଧ କଲି ଓ ମୁହୂର୍ତ୍ତକ ପରେ ମୁଁ ସେ ଅତିଥିଙ୍କୁ ଦେଖିବାକୁ ଗଲି । ଅତିଥିଙ୍କୁ ପ୍ରଥମେ ଦେଖି ମୁଁ ଚମକି ପଡ଼ିଲି । ଅତିଶୟ ବୃଦ୍ଧ ଓ ଖର୍ବାଙ୍ଗ (ତାଙ୍କ ପରି ଏତେ ଉର୍ଦ୍ଧ୍ୱବୟସ୍କ କ୍ଷୀଣାଙ୍ଗ ବୃଦ୍ଧ ମୁଁ ଅଦ୍ୟଯାଏ ଦେଖି ନାହିଁ); ପାଟିର ଦାନ୍ତଯାକ ସମସ୍ତ ପଡ଼ି ଯାଇଅଛି; ମସ୍ତକରୁ ସମସ୍ତ କେଶ ଉପୁଡ଼ି ଯାଇଅଛି; ନିତାନ୍ତ ନଗଣ୍ୟପ୍ରାୟ ଅବସ୍ଥା, ଉଠି ବସିବାର ଶକ୍ତି ନାହିଁ, ତାଙ୍କର ଭାଷା

ଆମ୍ଭେମାନେ ବୁଝି ପାରିଲୁଁ ନାହିଁ, କିନ୍ତୁ ବେଳେ ବେଳେ ତାଙ୍କର ଆର୍ତ୍ତସ୍ୱରରୁ ଜଣାଗଲା ଯେ ସେ ବହୁ ଦୂରରୁ ଆଗତ, କ୍ଷୁଧା ତୃଷ୍ଣାରେ ମୁଖ ଶୁଖି ଯାଇଅଛି; ଚକ୍ଷୁ ଦୁଇଟି ଭିତରକୁ ପଶି ଯାଇଅଛି । ପରକୁ ମୀମାଂସା କଲି, ସେ ବୃଦ୍ଧ ବହୁ ଶତାବ୍ଦୀର ଓ ବହୁ ଦୂରରୁ ଆଗତ ଓ ଅତିଶୟ କ୍ଲାନ୍ତ ଓ ଅନାହାରଜର୍ଜ୍ଜର; ନିଜ ଭୋଜନ ଦ୍ରବ୍ୟ ଉଦରସ୍ଥ କରିବାର କ୍ଷମତା ମଧ୍ୟ ଲୁପ୍ତ ହୋଇ ଯାଇଅଛି । ଅତିଥିଙ୍କୁ କିଛି ଖୁଆଇ ସେ ଘରେ ଅଗ୍ନି ଜାଳି ତୈଳ ମର୍ଦ୍ଦନ କରି ତାଙ୍କୁ ସୁସ୍ଥ କରାଇବାକୁ ମୋ ଦାସୀକୁ କହି ଆସିଲି ଓ ଅତିଥି ଟିକିଏ ସବଳ ହେଲେ ତାଙ୍କର ପରିଚୟ ମିଳି ପାରେ, ଏହି ଆଶାରେ ରହିଲି । କିନ୍ତୁ ମତେ ଏହା ଅଦ୍ଭୁତ ବୋଧ ହେଲା । ପରେ ଶୁଣିଲି ଯେ ମୋ ସ୍ତ୍ରୀ ଆରୋଗ୍ୟ ଲାଭ କରିଅଛି, କିନ୍ତୁ ଆରୋଗ୍ୟ ଲାଭ କରି ମୋ ସଙ୍ଗରେ ଦେଖା ହେବା କଥା ଦୂରେ ଥାଉ, ସେ ପ୍ରାଣପଣରେ ଅତିଥିଙ୍କ ସେବାରେ ଲାଗିଅଛି । ମୁଁ ଏହା ଶୁଣି ଅତି ଆନନ୍ଦିତ ହେଲି ଓ ମନେ ମନେ ସ୍ତ୍ରୀକୁ ହେଢେ ଆଶୀର୍ବାଦ କଲି । ଈଶ୍ୱର ତାକୁ ଚିରଦିନ ଅତିଥି-ସେବାରେ ନିଯୁକ୍ତ କରନ୍ତୁ ଓ ମୈତ୍ରୀବ୍ରତ ଶିକ୍ଷା ଦିଅନ୍ତୁ । ସ୍ତ୍ରୀର ଏପରି ଅତିଥି-ଚର୍ଯ୍ୟା ଦେଖି ମୋ ମନରେ ଅତିଥିଚର୍ଯ୍ୟାର ଉଦ୍ରେକ ହେଲା । ମୁଁ ଯଥାସାଧ୍ୟ ଅତିଥିଙ୍କର ଅଭାବ ଦୂର କରିବାରେ ଯତ୍ନଶୀଳ ହେଲି । ଅତିଥି ଟିକିଏ ସବଳ ଓ ସୁସ୍ଥ ହେଲାରୁ ମୋ ସ୍ତ୍ରୀ ମୋ ନିକଟକୁ (ପ୍ରାୟ ଏକମାସ ପରେ ) ପ୍ରଥମ ଦେଖା କରିବାକୁ ଆସିଲା, କିନ୍ତୁ କି ଅଦ୍ଭୁତ ପରିବର୍ତ୍ତନ ! ସେ ପ୍ରେମ ନାହିଁ, ସେ ମମତା ନାହିଁ, ସେ କଟାକ୍ଷଭଙ୍ଗୀ ନାହିଁ । ମୋ ନିକଟରେ ଦଣ୍ଡେ ବସିଛି, ସେ ଅତିଥିଙ୍କ କଥା ମନେ ପଡ଼ିବାରୁ ହଠାତ୍ ମୋଠାରୁ ବିଦାୟ ନ ନେଇ ଉଠିଗଲା । ମତେ ଟିକିଏ ଅଦ୍ଭୁତ ବୋଧ ହେଲା । ମୁଁ ଦିନେ ଅତିଥିଙ୍କ ନିକଟକୁ ଯାଇ ତାଙ୍କର ସବିଶେଷ ବୃତ୍ତାନ୍ତ ପଚାରିଲାରୁ ସେ ଯାହା ଉତ୍ତର ଦେଲେ, ମୁଁ ତହିଁରୁ କିଛି ବୁଝି ପାରିଲି ନାହିଁ । ତାଙ୍କ ଭାଷା ଆମ୍ଭ ଦେଶର ଭାଷା

ନୁହେ । ଗୃହର ସମସ୍ତେ ତାଙ୍କର ଭାଷା ଶିଖାଇବାକୁ ଚେଷ୍ଟିତ ହେଲୁ ଓ ପ୍ରାୟ ୧୨ ବର୍ଷରେ ତାଙ୍କ ଭାଷାରେ କଥାଭାଷା କରି ପାରିଲୁ । ଏଣେ ଅତିଥି ୩ ବର୍ଷ ମଧ୍ୟରେ ଆମ୍ଭମାନଙ୍କ ଭାଷା ବେଶ୍ ଶିଖିଗଲେ । ଅତିଥି କ୍ରମଶଃ ବଳିଷ୍ଠ ଓ ଆରୋଗ୍ୟ ହୋଇ ଚାଲି ପାରିଲେ । ଅତିଥି ମୋ ଗୃହରୁ ଯିବାର ଇଚ୍ଛା ପ୍ରକାଶ କଲେ ନାହିଁ ! ମୋର ସୁଖର ଦିନ ବୁଡ଼ିଲା ! ସନ୍ଦେହ ଆସି ମନକୁ ଛୁଇଁଲା । ଅତିଥିଙ୍କ ସଙ୍ଗେ ମୋ ସ୍ତ୍ରୀର ଘନିଷ୍ଠତା ବଢ଼ିଲା । ମତେ ଟିକିଏ ଅଡୁଆ ବୋଧ ହେଲା । ଆଜି କାଲି ମୋ ନିମନ୍ତେ ସ୍ତ୍ରୀର ଚିନ୍ତା ନାହିଁ, ଯତ୍ନ ନାହିଁ, ସବୁ ଯତ୍ନ ସବୁ ଚିନ୍ତା ଅତିଥିଙ୍କଠାରେ; ଅତିଥିଙ୍କ ହେତୁ ସମସ୍ତ ସମୟରେ ବିବାଦ ମଧ୍ୟ ଆରମ୍ଭ ହେଲା । ଜାଣିଲି ଯେ ଅତିଥିଙ୍କଠାରେ ମୋ ସ୍ତ୍ରୀ ମନପ୍ରାଣ ଢାଳି ଦେଇ ସାରିଲାଣି । ମନେ ମନେ ଅତିଥିଙ୍କ ପ୍ରତି ଟିକିଏ ଈର୍ଷା ହେଲା । କିନ୍ତୁ ତାଙ୍କର ତ କିଛି ଦୋଷ ନାହିଁ । ଦୋଷ ମୋ ସ୍ତ୍ରୀର । ମୋ ସ୍ତ୍ରୀର ବା କିପରି ଦୋଷ ? ମୁଁ ଅନୁମତି ଦେଇ ନ ଥିଲେ ଅତିଥି ବା କାହିଁ ମୋ ଘରେ ସ୍ଥାନ ପାଇ ଥାନ୍ତେ ? ମୁଁ ବା କଣ କରିବି ? ନିଶା ଝୋଳରେ କେତେବେଳେ ଅନୁମତି ଦେଇ ପକାଇଛି । ଜାଣିଥିଲି କି ଅତିଥି ମୋର ଭଗାରି ହେବ ? ଅଚ୍ଛା, ଦେଖାଯାଉ ! ଦିନେ ମୁଁ ଦର୍ପଣରେ ମୁହଁ ଦେଖୁଛି, ମୋର ମୁଣ୍ଡରେ ଦୁଇ ଚାରିଗୋଟି ପକ୍ୱକେଶ ଦେଖାଗଲା । ଏ ସମୟରେ ଅତିଥି ଆମ ଗୃହକୁ ଆସିବାର ପ୍ରାୟ ୩୪ ବର୍ଷ ହେଲା । ପକ୍ୱକେଶ ଦେଖି ବୃଦ୍ଧ ହୋଇଗଲି ବୋଲି ମନରେ କ୍ଷୋଭ ହେଲା । ପଛକୁ ଚାହିଁ ଦେଖେଁ—କି ଅଦ୍ଭୁତ, ଅଚିନ୍ତ୍ୟପୂର୍ବ ଦୃଶ୍ୟ ! ! ! ଅତିଥି ଓ ମୋ ସ୍ତ୍ରୀ ପରସ୍ପର ପରସ୍ପରକୁ ଆଲିଙ୍ଗନ କରି ଚୁମ୍ବନ ଦେଉଅଛନ୍ତି ! କି ଧୃଷ୍ଟତା ! କି ଅଯଥା ଅଧିକାର ! ସ୍ୱାଧୀନତାର କି ଅପବ୍ୟବହାର ! ଧନ୍ୟ ରେ କାଳ ! ଧନ୍ୟ ଈଶ୍ୱର ! ( ମନ୍ତ୍ରଗମ୍ ଏହା କହି କହି ପ୍ରେମରେ ଗଡ଼ ଯାଉଥାଏ ଓ ଆମ୍ଭେମାନେ ଅବାକ୍ ହୋଇ ତା ମୁହଁକୁ ଚାହିଁ ଥାଉଁ ) ଏତିକି ନୁହେଁ—ମୋ ଉପସ୍ଥିତିରେ ଏପରି

ଅଭିନୟ ! ମୁଁ ଗୃହିଁ ଦେଲାରୁ ହୁଦ୍ୱେଁଯାଇ ମଣେ ଗୃହିଁ ଚିତ୍କାର କରି ହସି ଉଠିଲେ ଓ ମୋ ସ୍ତ୍ରୀ ଟିକିଏ ଲଜ୍ଜିତା ହେଲାପରି ବୋଧ ହେଲା । ପ୍ରଥମେ ପ୍ରଥମେ କୌଣସି ଅନଭ୍ୟସ୍ତ କାର୍ଯ୍ୟ କଲେ ସମସ୍ତ ସମୟରେ ଏହିପରି ଲଜ୍ଜା ଆସେ । କିନ୍ତୁ କ୍ରମଶଃ ସେ ଲଜ୍ଜା କେଉଁଆଡ଼େ ଗଲା । ମଣେ ତାଙ୍କ ସେମାନେ ମୋ ସମ୍ମୁଖରେ ଏହିପରି ଅଯଥା ସ୍ୱାଧୀନ ବ୍ୟବହାର କରିବାକୁ ଲାଗିଲେ ! ମୁଁ କ୍ରୋଧରେ, ଲଜ୍ଜାରେ, ଅପମାନରେ ଅସ୍ଥିର ! ସେତେବେଳକୁ ମୋ ବୁଦ୍ଧି ହଜିଲାଣି ଓ ମୋ ମତି କ୍ରମଶଃ ଅସ୍ଥିର ହେଲାଣି । ଅତିଥି ସଙ୍ଗେ ଏହିପରି ବ୍ୟବହାର କଲାବେଳେ ମୁଁ ଦେଖିଲି ଯେ ୧୦ ବର୍ଷ ତଳେ ମୋ ସ୍ତ୍ରୀର ଯେଉଁ ଲାବଣ୍ୟ ଥିଲା, ତାହା ପୁନର୍ବାର ଫୁଟିଅଛି, ତାହାର ରସିକତା ଉଛୁଳିଅଛି, ସେ ନବ ଯୁବତୀ ହୋଇଅଛି ଓ ମୁଁ ଏକା ବୃଦ୍ଧ, ଅରସିକ ଓ ବେରୂପ ହୋଇଅଛି । ମୋର ବୟସ, ରସିକତା ଓ ସୁରୂପକୁ ଏ ଅତିଥି ଚୋରି କରିଅଛନ୍ତି । ମୁଁ ଯହୁଁ ଯହୁଁ ବୃଦ୍ଧ ହେଉଅଛି, ଅତିଥି ତହୁଁ ତହୁଁ ଯୁବା ହେଲାପରି ଦେଖା ଯାଉଅଛନ୍ତି । ମୋ ମସ୍ତକରେ ଶୁକ୍ଳ କେଶର ଆବିର୍ଭାବ ସଙ୍ଗେ ସଙ୍ଗେ ଅତିଥିଙ୍କର ମସ୍ତକ ଘନ କୃଷ୍ଣ କେଶରେ ପରିପୂର୍ଣ୍ଣ । ମୋ ଯୌବନ ଚୋରି କରି ତା ଉପରେ ମୋ ସ୍ତ୍ରୀ ସଙ୍ଗେ ଏପରି ଅଯଥା ସ୍ୱାଧୀନ ବ୍ୟବହାର ! ମୋ ଦେହ କଣ୍ଟକମୟ, ସ୍ୱେଦମୟ ହୋଇଗଲା । କଣ କରିବି, ମୁହୂର୍ତ୍ତକ ନିଶା ଖେଳରେ ଏହି ବିପରିଣାମ ! ଗୃହ ଛିଦ୍ର ବା ପରାରେ କାହାକୁ କହିବ ? ଯେ ଶୁଣିବ ସେ ହସିବ, ଯେ ଶୁଣିଲା ସେ ହସିଲା । ଏତିକରେ ସନ୍ତୁଷ୍ଟ ନ ହୋଇ ସେ ଅତିଥି ମୋ ଉପରେ ଅତ୍ୟାଚାର ଆରମ୍ଭ କରିବାକୁ ବସିଲେ । ମୋର ଯେଉଁ ଯେଉଁ ବସ୍ତୁରେ ବିଶେଷ ସ୍ନେହ, ଅତିଥି ସେ ସବୁ ବସ୍ତୁ ମୋ ବିନା ଅନୁମତିରେ ନାରଖାର କଲେ । ମୋ ଫୁଲ ବଗିଚାରେ ପଶି ମୋ ଆଖିଆଗରେ ଫୁଲ ଛିଣ୍ଡାଇବାକୁ ଲାଗିଲେ । ମୋ ଲୁଗାପଟା ବିଛଣା ଇତ୍ୟାଦି ଅପରିଷ୍କାର କଲେ । ମନୁଷ୍ୟର ଧୈର୍ଯ୍ୟର ତ ସୀମା ଅଛି । ମୁଁ ଦିନେ

ଅତିଥିଙ୍କ ଉପରେ ଅସନ୍ତୋଷ ପ୍ରକାଶ କରିବାରୁ ମୋ ସ୍ତ୍ରୀ ଅତିଥିଙ୍କ ପକ୍ଷ ସମର୍ଥନ କରି ମୋର ମସ୍ତିଷ୍କ ବିକୃତ ହୋଇଅଛି ବୋଲି ବିଦ୍ରୂପ କଲା! ଏହା ଦେଖି ମୁଁ ଅବାକ୍! ଅତିଥି ମଧ୍ୟ ଲଜ୍ଜିତ ନ ହୋଇ ଚିତ୍କାର କରି ହସି ଉଠିଲେ । ହାଡ଼ ପଶୁ ପଶୁବାହା ପଶିଲା । ହାତଗୁଡ଼ା କମ୍ପିଣିକ ଆସିଲା ।

(ପାଠକ ! ବର୍ତ୍ତମାନ ମନୁଷ୍ୟମର ଭାଷା ପୂର୍ବ ମନୁଷ୍ୟମର ଭାଷା ନୁହେଁ, ଦେଖୁଛନ୍ତି ତ ? ଅମ୍ଭେମାନେ ସମସ୍ତେ କ୍ରୋଧରେ ଅସ୍ଥିର । ପଣ୍ଡିତ ମହାଶୟ କହିଲେ, 'ଅଜ୍ଞାତକୁଳଶୀଳସ୍ୟ ବାସୋ ଦେୟୋ ନ କସ୍ୟଚିତ୍ ।' ଧିକ୍ ସେ ଅତିଥିର କୃତଘ୍ନତା ! ଏପରି ଅତିଥି ଅାଦୌ ଦୟାର ପାତ୍ର ନୁହେ । ଅଜି କାଲି ସ୍ତ୍ରୀମାନଙ୍କର କାଳ ହେଲା । ସ୍ୱାମୀ ଥାଉଁ ଥାଉଁ ଏପରି ଅବୈଧ ଅଚରଣ ! ଭାର୍ଯ୍ୟା ଭର୍ତ୍ତୃବଶେଷ୍ୟିନୀ ପରବଶା !)

କ୍ରମେ କ୍ରମେ ଅତିଥି ଅସି ଆମ ଗୃହରେ ରହିବାର ୨୦ ବର୍ଷ ହେଲା; ପୁଣି ଅତିଥିଙ୍କ ନିମନ୍ତେ ଗୋଟିଏ ସ୍ତ୍ରୀ-ଅତିଥି ଅଣିବାକୁ ହେଲା । ଅତିଥି କ୍ରମଶଃ ପଢ଼ାଶୁଣାରେ ବେଶ୍ ବ୍ୟୁତ୍ପନ୍ନ ହେଲେ । ଦିନେ ମୁଁ ବଲରେ ହୋଡ଼ ହାଣୁଛି, ଦିନ ଦୁଇ ପ୍ରହର ଅସି ହେଲାଣି । ଏହି ସମୟରେ ହଠାତ୍ ଅତିଥି ଅସି ବଲରେ ଉପସ୍ଥିତ ହେଲେ ଓ ମୋଠାରୁ କୋଡ଼ି ଖଣ୍ଡିକ ଛଡ଼ାଇ ନେଇ କହିଲେ, "ମୁଁ କାର୍ଯ୍ୟ କରିବି, ଅପଣଙ୍କର ଅଉ ବ୍ୟସ୍ତ ହେବାର ଅବଶ୍ୟକ ନାହିଁ, ଅପଣ ଯାଅନ୍ତୁ ।" ମୁଁ କହିଲି, "ହଁ । ମୋ ଜୀବନର ତ ସବୁ ନେଇ ସାରିଲଣି । ମୋ ବୟସ, ଯୌବନ, ପ୍ରେମ, ସ୍ତ୍ରୀ ସବୁ ନେଲ; ବାକି ମୋର ଏତିକ ଅବଲମ୍ବନ ଥିଲା, ଯାହାକୁ ମଧ୍ୟ ନିଅ, ମୁଁ ଯାଉଛି ।" ସେ ବିଲ ମୋ ବାଡ଼ି ପଛଅଡ଼େ । ମୋ ସ୍ତ୍ରୀ ବାଡ଼ିକୁଅରେ ଗାଧୁଥିଲା, ଏହି ସମୟରେ ଡାକି ଦେଲା, 'ତୁମେ ଅସ, ଖରା ଉତ୍କଟ ହେଲାଣି, ପୁଅ ଖାଇ ପିଇ ସାରି ବାଡ଼ିକୁ ଯାଉଛି, ସେ କାମ କରୁଥାଉ, ତୁମେ ଘରକୁ ଅସ । ଅଉ କେତେ କଳବାଡ଼ ଧନ୍ଦା କରୁଥିବ ?' ମୁଁ ଚାହିଁଲି, ସ୍ତ୍ରୀର ମୁଖ ହର୍ଷଯୁକ୍ତ, 'ପୁଅ'ର ମୁଖ ହର୍ଷଯୁକ୍ତ, ଅତଏବ ବାଧ ହୋଇ ମୁଁ ଟିକିଏ

ବସି ଦେଇ ଘରକୁ ଆସିଲି । ତହିଁ ଅରଦକ ସନ୍ତାନ୍ତ 'ପୁଅ' ଜମା ସବୁ କାମ ଓ ଧନ୍ଦା ଲଗାଇ ଦେଇ ଘରୁ ବାହାରଲି—ସଂସାର ଲୀଳା ଦେଖିବ, ପୁରୁଣା ଯାଉଛନ୍ତି, ନୂଆ ଆସୁଛନ୍ତି । ସେହି ଦନଠାରୁ ୧୬ ବର୍ଷ ଏପର ସଂସାର ଦେଖି ଦେଖି ବୁଲିଲଣି । ଆଜ ୧୬ ବର୍ଷ ତପସ୍ୟା ପୂର୍ଣ୍ଣ ହେଲା । ମୋର ସଂସାର ଦେଖା ଶେଷ ହେଲା । ଅନେକ ଦେଖିଲି, ଅନେକ ଶିଖିଲି, ଅନେକ ଶିଖାଇଲି, ମୁଁ ଯାଉଛି ।'' ଏହା କହ ହଠାତ୍ ମନ୍ତ୍ରମ୍ ହସି ହସି ନୁଙ୍ଗୀରୁ ପ୍ରସ୍ଥାନ କଲା ।

ଆମ୍ଭେମାନେ ବୁଝିଲୁ ଯେ Holmes ଯାହା କହୁଅଛନ୍ତି, "Insanity is often logic of an accurate mind over-tasked." ଅଧିକାଂଶ ବାତୁଳମାନେ କବିଙ୍କ ଉପାଦାନରେ ଗଠିତ । ଧନ୍ୟ ମନ୍ତ୍ରମ୍, ତୋ ଜୀବନ ସାର୍ଥକ । ତୁ ଧନ୍ୟ ! ତୁ ପ୍ରେମବାୟୁ ।

ଆମ୍ଭେମାନେ ଭାବିଲୁଁ ଯେ ଦୃଢ଼ ଭାବରେ ସଂସାରର କୌଣସି ବିଷୟ ଯଦି ଦନ ଭାବିଲେ ଲୋକ ବାତୁଳ ନ ହୋଇ ଆଉ କଣ ହେବ ? ଲୋକେ ଯେ ପାଗଳ ନ ହୁଅନ୍ତି, ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ପୃଥିବୀର ପନର ପଣ ଉଣେଇଶ ଗଣ୍ଡା ଜନକଡ଼ା ଲୋକଙ୍କର ଦୃଢ଼ ଚିନ୍ତା ନାହିଁ, ଥିଲେ ସଂସାର ବାତୁଳାଶ୍ରମରେ ପରିଣତ ହୋଇଥାନ୍ତା ଓ ସଂସାର ସ୍ୱର୍ଗ ହୋଇଥାନ୍ତା । ପ୍ରକୃତସ୍ଥ ମନୁଷ୍ୟ ଅନେକ ସମୟରେ ବାତୁଳଠାରୁ ହେୟ, ଘୃଣ୍ୟ, ଅପଦାର୍ଥ । ପାଠକ ! ଥରେ ଭାବି ଦେଖନ୍ତୁ, ମନ୍ତ୍ରମ୍ ଯେଉଁ ଚିତ୍ରଟି ଦେଖାଇଲା, ତାହା କେମନ୍ତ ସ୍ୱାଭାବିକ ଓ ସତ୍ୟପ୍ରତ୍ୟକ୍ଷ ।

ମନ୍ତ୍ରମ୍ ଗିବା ପରେ ଆମ୍ଭେମାନେ କ୍ଷଣକାଳ ନିର୍ଜୀବ ପ୍ରତିମା ପର ବସି ରହିଲୁଁ । ପରେ ପଣ୍ଡିତ ମହାଶୟ ପ୍ରଥମେ ଶାନ୍ତି ଭଙ୍ଗ କଲେ— ଓଃ ହୋ ! ଏଉଟା ଆମ୍ଭଙ୍କୁ ଘୋର ଭ୍ରାନ୍ତି-ସାଗରରେ ଅକସ୍ମାତ ମଗ୍ନ କରଦେଲା ! ଏଥି ନିମନ୍ତେ ଗୋଟିଏ ଶ୍ଳୋକ ରଚନା କର ହେଲେ କେଡ଼େ ଉତ୍କୃଷ୍ଟ ହୁଅନ୍ତା । ସମୟାନୁସାରେ ଏତଦ୍ବିଷୟରେ ଗୋଟିଏ

ଶ୍ଳୋକର ରଚନା କରିବାରେ ପ୍ରୟାସୀ ହେବୁଁ । ଏପରି ବକ୍ତାରମ୍ଭ ଲମ୍ଫ-ଝମ୍ପ କରି ଦେବ ବୋଲି କିଏ ଜାଣିଥିଲା ?

ମର୍ଦ୍ଦସିଂହ—ମୁଁ ତ ଅନେକ ଦିନରୁ କହୁଛି, ମସ୍ତିଷ୍କର ଯଥେଷ୍ଟ ଚିନ୍ତାଶୀଳତା, ଯଥେଷ୍ଟ ଅନୁଭବ ଅଛି, ତା ପରି ଜଣେ ଲୋକ ଟୁଙ୍ଗୀରେ ପାଇବା ଆମ୍ଭମାନଙ୍କ ଭାଗ୍ୟ । ତାର ଚିନ୍ତା-ସ୍ରୋତ ଠିକ ଏ ସ୍ଥିରତର ଭାବରେ ବହୁଥିଲେ ସେ ଜଣେ ଉତ୍କୃଷ୍ଟ କବି ହୋଇଥାନ୍ତା ।

ମୁଁ ବୁଝୁଛି, ଈଶ୍ୱର 'ମୋ ଘରେ ତ ଆଣି ଅଳ୍ପ ଦିନ ତଳେ ଗୋଟିଏ ଝିଅ ପଠାଇଅଛନ୍ତି, କେଜାଣି ମୋର ଭବିଷ୍ୟତରେ କଣ ଲେଖାଅଛି । କୋଉ ହାତରୁ ଛଡ଼ାଇବା ପର୍ଯ୍ୟନ୍ତ ନ ଗଲେ ରକ୍ଷା ।

ବିଶେଷ କିଛି କାର୍ଯ୍ୟ ଥିବାରୁ ପଣ୍ଡିତ ମହାଶୟ ଟୁଙ୍ଗୀରୁ ପ୍ରସ୍ଥାନ କରିବାକୁ ବସିଲେ । ଏହି ସମୟରେ ମାଷ୍ଟର ମହାଶୟ ହାତରେ ଖଣ୍ଡେ ପୁସ୍ତିକା ଧରି ଉପସ୍ଥିତ ହେଲେ । ଶ୍ୟାମସୁନ୍ଦର ବାବୁ ସେ ବହିକୁ ଦେଖିବାକୁ ଆଗ୍ରହ ପ୍ରକାଶ କରିବାରୁ ମାଷ୍ଟର ମହାଶୟ କହିଲେ, 'ଏ ପୁସ୍ତକର ନାମ 'କଂଗ୍ରେସ ବା ଜାତୀୟ ମହାସମିତି ।' ଏ pamphlet ( ପୁସ୍ତିକା ) ଅଳ୍ପ ଦିନ ହେଲା ଓଡ଼ିଆ type ( ଅକ୍ଷର )ରେ print (ଛପା) ହୋଇଅଛି ଓ ତାହା କଟକର 'ଉତ୍କଳସାହିତ୍ୟ' ଯନ୍ତ୍ରାଳୟରେ ମିଳେ । ତାହା ଟୁଙ୍ଗୀରେ ପଢ଼ା ହବ ବୋଲି ମୁଁ ୧୦।୧୫ ଜଣଙ୍କୁ ଡାକି ଆଣିଛି ।' ଏହା କହି ସେ ପୁସ୍ତକଟିକୁ ଶ୍ୟାମସୁନ୍ଦର ବାବୁଙ୍କ ହାତକୁ ଦେଇ ତାହା ଆଦ୍ୟୋପାନ୍ତ ପଢ଼ି ଦେବାକୁ ଅନୁରୋଧ କଲେ । ଶ୍ୟାମସୁନ୍ଦର ବାବୁ ଜଳଦଗମ୍ଭୀରସ୍ୱରରେ ତାହା ପଢ଼ିବାକୁ ଆରମ୍ଭ କଲେ ଓ ଅର୍ଦ୍ଧ ଘଣ୍ଟା ମଧ୍ୟରେ ଶେଷ କଲେ । ଟୁଙ୍ଗୀରେ ଉପସ୍ଥିତ ଉଚ୍ଚଠାରୁ ନୀଚ ପର୍ଯ୍ୟନ୍ତ ସମସ୍ତେ ଚିତ୍କାର କରି ଉଠିଲେ, 'ଜୟ ମହାରାଜାଧିରାଜଙ୍କ ଜୟ । ଜୟ କଂଗ୍ରେସର ଜୟ ।'

ସର୍ବଶଙ୍କର—ଭାଇମାନେ ! ଆଜ ଆମ୍ଭମାନଙ୍କର କି ସୁଦିନ ! ଓଡ଼ିଶାର ମଫସଲର ପଲ୍ଲିଗ୍ରାମରେ କଂଗ୍ରେସ ବୈଠକ ପଡ଼ନ୍ତା, ଏହା ସାମାନ୍ୟ ସୌଭାଗ୍ୟର ବିଷୟ ନୁହେଁ । ଇଂରେଜ ରାଜାଙ୍କ ରାଜତ୍ୱରେ ଆମ୍ଭେମାନେ ପୂର୍ବ ଅପେକ୍ଷା ଅନେକ ସୁଖରେ ଅଛୁଁ । ଆମ୍ଭମାନଙ୍କ ସୁଖରେ ଥାଇବା ଆମ୍ଭମାନଙ୍କ ରାଜାଙ୍କର ଏକାନ୍ତ ଇଚ୍ଛା । କିନ୍ତୁ ଅନେକ ସ୍ଥଳରେ କର୍ମଚାରୀମାନଙ୍କର ଓ ପ୍ରଜାମାନଙ୍କର ଦୋଷରୁ ରାଜାଙ୍କର ଇଚ୍ଛା ପାଳିତ ହେଉ ନାହିଁ । ଆମ୍ଭମାନଙ୍କର ଅନେକ ଦୁଃଖ ଅଛି । ଆମ୍ଭମାନଙ୍କର ଅଭାବ ଓ ଅଭିଯୋଗର ରାଜାଙ୍କ କାନରେ ପଡ଼ିଲେ ରାଜା ଅବଶ୍ୟ ତାଙ୍କ ପୁତ୍ରମାନଙ୍କ ଦୁଃଖ ଶୁଣିବେ । ଶୁଭକ୍ଷଣରେ ଆମ୍ଭେମାନେ ଇଂରେଜ ରାଜାଙ୍କୁ ପାଇଅଛୁଁ । ଇଂରେଜରାଜ ଆମ୍ଭମାନଙ୍କୁ ସଭ୍ୟତା ଦେଇଅଛନ୍ତି, ଶିକ୍ଷା ଦେଇଅଛନ୍ତି, ବଳ ଦେଇଅଛନ୍ତି, ଅଭାବ ବୁଝିବାର କ୍ଷମତା ଦେଇଅଛନ୍ତି । ତେବେ କେତେ ଲୋକ କହନ୍ତି ଯେ ଏପରି ଚେଷ୍ଟା ଯାହା କର, କିଛି ହେବ ନାହିଁ । କିନ୍ତୁ ଆମ୍ଭେମାନେ କହୁଁ ଯେ ରାଜା ପ୍ରଜାଙ୍କର ପିତା; ପୁତ୍ରର କାନ୍ଦ ଶୁଣି କି ବାପ ଥିର ହୋଇ ପାରେ ? ଆମ୍ଭେମାନେ ହୃଦୟର ସହିତ କାନ୍ଦି ପାରୁ ନାହୁଁ ବୋଲି ଆମ୍ଭମାନଙ୍କ ରାଜାଙ୍କ ହୃଦୟ ତରଳାଇ ପାରୁ ନାହୁଁ । ଇଂରେଜରାଜ ଆମ୍ଭମାନଙ୍କ ନମସ୍ୟ—ପୂଜ୍ୟ । ଯାହା ଆମ୍ଭମାନଙ୍କର ଦୁଃଖ ଅଛି, ସମସ୍ତେ ହୃଦୟର ସହିତ ମିଳି ରାଜାଙ୍କଠାରେ ଜଣାଇଲେ ରାଜା ଅବଶ୍ୟ ଶୁଣିବେ । ଆମ୍ଭମାନଙ୍କ ଦେଶର ପୁରାତନ ପ୍ରଥା ରାଜାଙ୍କଠାରେ ଅଟଳ ଭକ୍ତି । ଆମ୍ଭମାନଙ୍କ ଶାସ୍ତ୍ରରେ ଅଛି, ଅଷ୍ଟାନାଂ ଲୋକପାଳାନାଂ ବପୁର୍ଧାରୟତେ ନୃପଃ । ଆମ୍ଭମାନଙ୍କୁ ଆମ୍ଭମାନଙ୍କ ରାଜାଙ୍କଠାରୁ ଦୂରରେ ରଖାଇଲେ ଯେଉଁମାନଙ୍କର ଲାଭ ଅଛି, ସେମାନେ ଆମ୍ଭମାନଙ୍କ ଭକ୍ତିପୂର୍ଣ୍ଣ କ୍ରନ୍ଦନ-ଧ୍ୱନିକୁ ରାଜାଙ୍କଠାରୁ ଲୁଚାଇ ରଖିଅଛନ୍ତି ଓ କ୍ରନ୍ଦନଧ୍ୱନିକୁ ବିଦ୍ରୋହ-ମାନଙ୍କ ହାସ୍ୟତରଙ୍ଗ ବୋଲି ପ୍ରଚାର କରୁଅଛନ୍ତି । ଆମ୍ଭମାନଙ୍କର ସ୍ୱର୍ଗୀୟା ମହାରାଣୀ ଯେଉଁ ଘୋଷଣା କରି ଦେଇଥିଲେ, ତାହା ଆମ୍ଭ-

ମାନଙ୍କ ,ଅଶ୍ରୁ ଓ ସେହ ଅଣ୍ଟାପନା-ବାକ୍ୟ ଉପରେ ନିର୍ଭର କର ରଜାଙ୍କ ନିକଟରେ ପଡୁଛୁଁ, ପଡ଼ିଛୁଁ ଓ ପଡ଼ିବୁଁ । ରାଜ୍ଯ ପୁତ୍ର ଅମ୍ଭ-ମାନଙ୍କର ବର୍ତ୍ତମାନ ରଜା ଅମ୍ଭମାନଙ୍କର ସବୁ ଗୁହାରି ଶୁଣିବେ ବୋଲି ଭୃତନିଶ୍ଚୟ ହୋଇଅଛନ୍ତି । ଅମ୍ଭେମାନେ ଅଳ କରିବାକୁ ଶିଖି ନ ଥିଲୁଁ । ରଜା ଅମ୍ଭମାନଙ୍କୁ ସଭ୍ୟତା ଦେଇ ଅମ୍ଭମାନଙ୍କ ଅଭାବ ଅମ୍ଭେ-ମାନେ କପରି ବୁଝି ପାରିବୁଁ, ତାହା କରିଅଛନ୍ତି ଓ କରୁଅଛନ୍ତି । ଅମ୍ଭମାନଙ୍କର ସମସ୍ତ ଗୁହାରିର ପ୍ରତିକାର ରଜା କରୁ ନାହାନ୍ତି ବୋଲି ଅନେକ କ୍ଷୋଭ ବ୍ୟସ୍ତ । କନ୍ତୁ ଥରକେ ଗୋଟିଏ ଗୁହାରି ନ କର (ଉେକଳ ମନୁଷ୍ୟ ହୁଇ ହାତରେ ଭାତ ଖାଇଲା ପରି) ଅମ୍ଭେମାନେ ଏତା ଥରକେ ରଜାଙ୍କ ନିକଟରେ ହଜାରେ ଗୁହାରି ନେଇ ପହଞ୍ଚୁଛୁଁ । ଏଥିରେ ସମ୍ୟକ୍ ଫଳ ବା ହେବ କପରି ? ଭକ୍ତିର ସହିତ ହୃଦୟର ସହିତ ଯଦ ପୁତ୍ର ପିତାଙ୍କ ଆଗରେ ମନୋବେଦନା ଜଣାଇ ସ୍ଥିର ଭାବରେ ଅଳ କରିବ, ନିଶ୍ଚୟ ଦନେ ପିତାଙ୍କ ମନ ତରଳବ । କଙ୍ଗ୍ରେସ ଅବଶ୍ୟ ଦନେ ରଜାଙ୍କ ହୃଦୟରେ ଦୟା ସଞ୍ଚାର କରାଇବ । ସବୁ ବିଷୟରେ ଧୈର୍ଯ୍ୟ ଆବଶ୍ୟକ । ଯାହା ଅକାଳ ହେଲା, ତାହା ଚାଲି ହେବ । ଯାହା ମୁଁ ନ କରି ପାରିବ, ତାହା ମୋର ସଙ୍ଗୀମାନେ କରିବେ । କେବଳ ଯେ ରଜାଙ୍କୁ ଦୁଃଖ ଜଣାଇଲେ କଷ୍ଟ ହେବ, ଏପରି ମନେ କରିବା ଭୁଲ । ଅମ୍ଭମାନଙ୍କ ନିଜ ନିଜ ମଧ୍ୟରେ, ନିଜ ନିଜ ଘରେ ଅନେକ ଦୁର୍ଗୁଣ, ଅଭାବ ଓ ଦୋଷ ରହିଛି, ତାହା ଆଗେ ସଂଶୋଧନ କରିବା । 'ଆପଣା ପୁନା ଭେଣ୍ଡି' ଥିବାଯାଏ ଫଳ କଦାପି ଆଶାନୁରୂପ ହେବ ନାହିଁ । ରଜାଙ୍କୁ ଦେଖାଇବା ଯେ ଅମ୍ଭେମାନେ ତାଙ୍କର ଦୟାର ଯୋଗ୍ୟ । ଅମ୍ଭେମାନେ କେବେହେଁ ରଜାଙ୍କ ବିପକ୍ଷ ନୋହୁଁ । 'ଶ୍ରୀମତୀ ମହାରାଣୀଙ୍କ ଜୟ,' 'ଶ୍ରୀ ମହାରଜାଙ୍କ ଜୟ' ବୋଲି ଭୂମେ ସପସନ୍ତର ବାକ୍ୟ କଣ୍ଠସ୍ଥ ପିଲାଙ୍କ ମୁହଁରୁ ଶୁଣିବ । ଯେବେ ପୂର୍ଣ୍ଣ ଭକ୍ତି ଓ ସମ୍ମାନର ସହିତ କାହ ବାପ ପାଖରେ ଆପଣା ଦୁଃଖର

ଗୁହାରି କରେ, ତେବେ କେଉଁ ଜ୍ଞାନ ମୂର୍ଖ କହିବ ଯେ ଏପରି ପୁଅ ପିତୃଦ୍ରୋହୀ । ବାପ ପୁଅଙ୍କୁ ଭିନ୍ନ ଭିନ୍ନ କଲେ ଯାହାଙ୍କ ପେଟ ପୋଷା ହେବ, ତାଙ୍କ ଛଡ଼ା ଏପରି କଥା କେହି କହିବେ ନାହିଁ, କହି ନାହିଁ କ କହନ୍ତୁ ନାହିଁ । ଅବଶ୍ୟ ଦନେ ହେଲେ ବାପ ପୁଅର ହୃଦୟ ମିଶି ପାରିବେ । ଈଶ୍ୱର ଅମ୍ଭମାନଙ୍କ ରାଜରାଜେଶ୍ୱରଙ୍କୁ ଅମ୍ଭମାନଙ୍କ ଗୁହାରି ଶୁଣିବାକୁ ସୁବୁଦ୍ଧି ଓ ବଳ ଦିଅନ୍ତୁ ଏବଂ ଅମ୍ଭମାନଙ୍କ ଗୁହାରି ଗୋଟି ଗୋଟି କରି ରଜାଙ୍କ କାନରେ ପକାଇବାକୁ ଅମ୍ଭମାନଙ୍କୁ ଧୈର୍ଯ୍ୟ ଓ ସାହସ ଦିଅନ୍ତୁ । ଯାହା ମାଗିଲେ ସହଜରେ ପାଇ ପାରିବୁ, ସେଥିପାଇଁ ତ ଯୋର ଯିଗର କରିବାର ନୁହେ, କରିବୁ ନାହିଁ । ଦେଶଯାକ ଅମ୍ଭ-ମାନଙ୍କ କଷ୍ଟରି ବିଷୟ ଆଲୋଚନା କରିବୁ, ଇଂଲଣ୍ଡରେ ଆନ୍ଦୋଳନ କରିବୁଁ, ରଜାଙ୍କ ପାଖରେ କର ଯୋଡ଼ି ଜଣାଇବୁ । ଅବଶ୍ୟ ରଜାଙ୍କ ହୃଦୟ ଦିନେ ତରଳିବ । ଆମ୍ଭେମାନେ ସମ୍ମାନର ଯୋଗ୍ୟ ହେଲେ ଅବଶ୍ୟ ରଜା ଅମ୍ଭମାନଙ୍କୁ ସମ୍ମାନିତ କରିବେ, ଅମ୍ଭମାନଙ୍କ କଷ୍ଟ ମେଣ୍ଟିବେ । ଆଉ ଗୋଟିଏ କଥା:—ବାହ୍ୟାଡ଼ମ୍ବରର ମାତ୍ରା କମି କରି ପ୍ରକୃତ କାର୍ଯ୍ୟର ମାତ୍ରା ବଢ଼ାଇବାର ଅବଶ୍ୟକ । ଈଶ୍ୱର କରନ୍ତୁ, ଆମ୍ଭେମାନେ ଅମ୍ଭମାନଙ୍କ ଅଭାବ ବୁଝି ପାରୁଁ ଓ ରାଜରାଜେଶ୍ୱର ଅମ୍ଭମାନଙ୍କ ଦୁଃଖ ଜାଣନ୍ତୁ । ଇତିହାସ ଦେଖ, ଇଂରାଜ ଜାତି କେବେହେଁ ଅତ୍ୟାଚାରର ସପକ୍ଷ ନୁହନ୍ତି; ଇଂରାଜ ଜାତି ସ୍ୱାଧୀନତାପ୍ରିୟ, ଇଂରାଜ ଜାତି ଅନେକ ପଶୁଙ୍କୁ ମନୁଷ୍ୟ କରିଅଛନ୍ତି, ଅନ୍ଧଙ୍କୁ ଚକ୍ଷୁ ଦେଇଅଛନ୍ତି । ସମସ୍ତ ଜଗତ ଯେ ଏକ ମହାନ୍ ଲକ୍ଷ ଆଡ଼କୁ ଅଗ୍ରସର ହେଉଅଛି, ଦିନକୁ ଦିନ ଉନ୍ନତ ହେଉଅଛି, ଏଥିରେ କିଛି ସନ୍ଦେହ ନାହିଁ ।"

ମହର୍ଷଗଣଙ୍କ ବାଗ୍ମିତାପରିପୂରିତ ବାକ୍ୟଚୟ ଶୁଣି ଅମ୍ଭମାନଙ୍କ ମନରେ ନବଜୀବନର ସଞ୍ଚାର ହେଲା ଓ ଅମ୍ଭେମାନେ ସମସ୍ତେ ଘନଘନ କରତାଳ ଦେଲୁଁ । ଅମ୍ଭେମାନେ ମଫସଲିଆ; ଅମ୍ଭମାନଙ୍କ ମନରେ ଧାରଣା ଥିଲା ଯେ ଅମ୍ଭମାନଙ୍କ ଗୁହାରି ଶୁଣିବାକୁ କେହି ନାହିଁ । ମାତ୍ର

ଖୋଳ ଘରେ ଲୁଚି; ଗୋଟିଠା ଖାଇ, ଅପଣା ପିଠିକି ନ ଅଉଁସି ଗୋଟିଏ ମାଳୁଆ ଗୋଡ଼କୁ ବଳକରେ ଅଉଁସି ପକାଉ ! ଅଜ ଏ କଥା ଶୁଣି ମନରେ କେତେ ଅଧାର ସଞ୍ଚାର ହୋଇଗଲା । ମଧ ମର୍ଦ୍ଦରାଜଙ୍କଠାରୁ ଶୁଣିଲି ଯେ ଏ ବର୍ଷରେ କଂଗ୍ରେସ ପକ୍ଷରୁ ଜଣେ Agent (ଦୂତ) ନିଯୁକ୍ତ ହୋଇ ଓଡ଼ିଶାରେ ଗ୍ରାମ ଗ୍ରାମ ବୁଲି କଂଗ୍ରେସର ମର୍ମ ମଫସଲର ଲୋକଙ୍କୁ ବୁଝାଇବେ । ମନେ ମନେ ଭାବିଲି, 'ଓଡ଼ିଶାରେ ଉପଯୁକ୍ତ ଲୋକ ନ ମିଳିବାରୁ ଜଣେ ଉତ୍କଳଭାଷାନଭିଜ୍ଞ ଲୋକଙ୍କୁ ବାଧ୍ୟ ହୋଇ ନିଯୁକ୍ତ କରାଗଲା' ଏ କଥା ସମ୍ବାଦପତ୍ରରେ ନ ବାହାରିଲେ ରକ୍ଷା । ହାୟ ! କେତେ ମୂର୍ଖଙ୍କର କେତେ ମତ ! ମୁଖରେ ଦେଶହିତୈଷୀ ବୋଲି ପରିଚୟ ଦେବା ଓ କାର୍ଯ୍ୟରେ କରିବା ବହୁତ ପ୍ରଭେଦ । ଜଣେ କେହି ଦୁଃଖ ପ୍ରକାଶ କରୁଥିଲେ, ଓଡ଼ିଶାରେ ଏତେ ଉଚ୍ଚ ଶିକ୍ଷିତ ଯୁବକ ଅଛନ୍ତି, ପୁଣି ଥିଲେହେଁ ଜଣେ ଲୋକ ପୂର୍ବା ସ୍ୱାଧୀନ ବ୍ୟବସାୟ କରିବାକୁ ମିଳିଲେ ନାହିଁ । ଏ କଥା ବିଲାତ ପର୍ଯ୍ୟନ୍ତ ଖବର ହୋଇଗଲା । କିନ୍ତୁ ଅସଲ ଭିତରର ଅପ୍ରିୟ ସତ୍ୟ କଥା କେଉଁ ଅନ୍ତରରେ ଲୁଚିଗଲା ! ବଣର କୁରାଡ଼ୀ ଓ କାଠ ମଧ୍ୟରେ ଯେଉଁ ସାରଗର୍ଭ ଗଳ୍ପ ଅଛି, ତାହା ମନେ ପଡ଼ିଲା । ଭଗବାନ୍ Congress ( ଜାତୀୟ ମହାସମିତି ) ରେ କେବଳ ଆତ୍ମମ୍ଭରିପ୍ରିୟ ଯଶୋଲିପ୍ସୁ ଲୋକ ନ ରଖି ପ୍ରକୃତ, ଆତ୍ମମ୍ଭରିଶୂନ୍ୟ, କାର୍ଯ୍ୟକ୍ଷମ, ଗୁଣଗ୍ରାହୀ, ପରିଶ୍ରମୀ ଲୋକଙ୍କ ହସ୍ତରେ କାର୍ଯ୍ୟଭାର ନ୍ୟସ୍ତ କରନ୍ତୁ, ଏହାହିଁ ପ୍ରାର୍ଥନା ।

ପଣ୍ଡିତ ମହାଶୟ ମଧ ଅଜ ଅନେକ ବାଟକୁ ଅଭିବାର ଦେଖି ସମସ୍ତେ ଅନୁର୍ଯ୍ୟାନ୍ୱିତ ହେଲୁଁ । ଇଂରାଜ ସରକାରଙ୍କ ବର୍ଷୟ ପଡ଼ିଲେ ଯେ ସାରବ ହୋଇ ବହିଁ ଯିବନ୍ତି, ସେ ମଧ ଅଜ 'ଜୟ ସମ୍ରାଟ ଜର୍ଜଙ୍କର ଜୟ' 'ଜୟ ଜାତୀୟ ମହାସମିତିର ଜୟ' ବୋଲି ଚିତ୍କାର କରି ଉଠିଲେ ।

ମର୍ଦ୍ଦରାଜ 'ବହିର୍ଦ୍ଦେଶାର୍ଥେ' ବାହାରିକୁ ଗଲେ । ଏହି ସମୟରେ

ସାହେବଙ୍କୁ ଯୋଗୀ ପଡ଼ିଆ ପରେ ଜମାଦାର ବାବୁ ଆରକ୍ତ ନୟନରେ 'ଦରେସ' ପିନ୍ଧି ଟୁଙ୍ଗୀରେ ଉପସ୍ଥିତ । ଆମ୍ଭେମାନେ ଦେଖି ଅବାକ୍ ! ଟୁଙ୍ଗୀରେ ପଦକ୍ଷେପ କରିବା ମାତ୍ରକେ ଜମାଦାର ପୂର୍ବପରିଚିତ ଲୋକ-ମାନଙ୍କୁ ଚିହ୍ନି ଗଲେ ଓ କହିଲେ, "ଦେଖୋ ! କୋଇ ବାହାର ମତ ଯାଓ, ହାମ୍ ସବ୍‌କୁ ଗିରଫ୍ କରକେ ଥାନାମେ ଲେଙ୍ଗେ । (ଜମାଦାର ଜାଣି ନ ଥିଲେ ଯେ ସର୍ବଗଣେ ଆଜ ଟୁଙ୍ଗୀରେ ଉପସ୍ଥିତ । ଗ୍ରାମରେ ସର୍ବଗଣଙ୍କ ଛଡ଼ା ଜମାଦାର ଅନ୍ୟ ବିଶେଷ କାହାକୁ ଖାତିର କରନ୍ତି ନାହିଁ । ସର୍ବଗଣେ କଲେକ୍ଟରୀ ଯାଉଅଛନ୍ତି, ତାଙ୍କ ସଙ୍ଗରେ ଖବର କାଗଜ ଅଛି, କଲମ, କାଳି, କାଗଜ ଅଛି, ଡ଼ାକ ଦସ୍ତ ଅଛି । ) ବିରାଡ଼ି ଆଖି ବୁଜି ଦୁଧ ପିଇଲେ କେହି ଦେଖି ପାରବ ନାହିଁ ବୋଲି ଜାଣୁ ଥିଲ । ଆଜ କାଲ୍ ଅଇଲ୍ କେସା କଡ଼ା, ଏ ବାତ୍ ତୁମମାନଙ୍କୁ ଓ ଅଚ୍ଛନ୍ ନ ଥିଲା ପର ! ଅବ୍ ଦେଖୋ, କେସା ମଜ୍‌ଜ୍ ହୋୟାଏଗା ।"

ଏତା କହିବା ମାତ୍ରକେ ୪।୫ ଜଣ Constable (ମଫସଲରେ ଆମ୍ଭେମାନେ କହୁଁ, 'କନେଷ୍ଟବଲ'; ଜମାଦାରଙ୍କୁ ଆମ୍ଭେମାନେ ଜାଣୁ 'କେମ୍ପବଲ' ଓ ତାଙ୍କର ଅଧୀନସ୍ଥ କର୍ମଚାରୀମାନଙ୍କୁ ଜାଣୁ କନେଷ୍ଟବଲ ) ଆସି ଦ୍ୱାରରେ ଦଣ୍ଡାୟମାନ ।

ରଘୁ ଭୋଇ, ଶ୍ୟାମ ପଧାନ, ଦାମା ପଡ଼ା ଲକ୍ଷ୍ମୀ ସାହୁ, ଜମାଦାରଙ୍କ ଗୋଡ଼ ତଳେ ଲମ୍ବଲମ୍ବ ପଡ଼ି ଗୁହାରି କଲେ, 'ହଜୁର ଆମର ମା ବାପ, ଜନ୍ମ କରମ, ଆମକୁ ମାଷ୍ଟ୍ରେ ଏଠେଇଁ ଡାକି ଆଣିଛନ୍ତି, ଆମେ ଆଉ ନ ଥିଲୁଁ । ହଜୁର ରଖିଲେ ରଖିବେ, ମାରିଲେ ମାରିବେ ।'

ଜମାଦାରେ ଏମାନଙ୍କ ସଙ୍ଗେ କେତେଗୁଡ଼ାଏ ମୌଖିକ ଅବୈଧାନିକ ଶବ୍ଦ ପ୍ରୟୋଗ କରି ହିନ୍ଦୀ ଭାଷାର ଜ୍ଞାନ ଦେଖାଉଅଛନ୍ତି, ଏହି ସମୟରେ ସର୍ବଗଣେ 'ବହିର୍ଦେଶ'ରୁ ଫେରି ଆସିଲେ । (କୌଣସି ସମ୍ବାଦପତ୍ରରେ କେତେ ଦିନ ତଳେ ଜମାଦାରଙ୍କର କେତେ ଦୁର୍ନାମ ବାହାରି ଥିବାରୁ ଉପଯୁକ୍ତ ବିଭାଗୀୟ ତଦନ୍ତ ପରେ ଜମାଦାରଙ୍କର ୬ ମାସ ଜେଲ

୧୦ ଟଙ୍କା ଅର୍ଥଦଣ୍ଡ ହୋଇଅଛୁ । ଜମାଦାରେ ଅଂକ ସୁଯୋଗ ବୁଝି ସେ ଅର୍ଥଦଣ୍ଡଟା ପୁରସ୍କାରଦ୍ୱାରା ଉଶୁଳ କରି ନେବେ ବୋଲି ଟୁଙ୍ଗୀକୁ ଆସିଥିଲେ । କିନ୍ତୁ ଉପାୟ ନ ଥିଲେ ଯାତ୍ରାବାଲ ଉପାୟ—ସର୍ଦ୍ଦାରକେ ଅପି ପହଞ୍ଚିଲେ ଓ ଜମାଦାରେ 'ଭୋଗୀବ ମନ୍ତ୍ରୌଷଧିରୁଦ୍ଧବୀର୍ଯ୍ୟଃ' ହୋଇ ଗଲେ !) ସର୍ଦ୍ଦାରଙ୍କର ଓ ଜମାଦାରଙ୍କର ଘନିଷ୍ଠ ବିଶ୍ରମ୍ଭାଳାପ ପରେ ଜମାଦାରେ ବାଗ୍ବ୍ୟୟ ନ କରି ସଦଳବଳରେ ପ୍ରସ୍ଥାନ କଲେ ଓ ଆମ୍ଭେମାନେ ସର୍ଦ୍ଦାରଙ୍କୁ କେବଳ ଆଶୀର୍ବାଦ କରି ଟୁଙ୍ଗୀରୁ ପ୍ରସ୍ଥାନ କଲୁଁ ।

